# ପାରସ୍ୟ-ବୀଣା




ଦି ଉତ୍କଳ ଷ୍ଟୋର୍ସ, କଟକ




ଲେଖକ—ରାୟସାହେବ ଜଗତ୍‌ବନ୍ଧୁ ମହାପାତ୍ର

ପ୍ରକାଶକ—

ସାରସ୍ୱତ ଭଣ୍ଡାର ଅନୁକୂଲ୍ୟରେ

**ଦି ଉତ୍କଳ ଷ୍ଟୋର୍ସ, କଟକ**

ସଂସ୍କରଣ — ମୂଲ୍ୟ—ଟ ୧ |

୧ମ — ବନ୍ଧେଇ—ଟ ୨ |

# ଉପକ୍ରମଣିକା

ଓମାର ଖୈୟାମଙ୍କ "ରୁବାୟତ୍"ର ଯେଉଁ ଅନୁବାଦ ଫିଜ୍‌ଜେରାଲ୍ଡ଼ କରି ଯାଇଛନ୍ତି, ତାହାର ୪ର୍ଥ ସଂସ୍କରଣର ଓଡ଼ିଆ ରୂପାନ୍ତର ଓଡ଼ିଶାର କବିତା ରସିକମାନଙ୍କୁ ଉପହାର ଦେବାର ଇଚ୍ଛା ମୋର ବହୁ ଦିନରୁ ଥିଲା । ଆଜି ଦୈବ ଯୋଗରୁ ତାହା କାର୍ଯ୍ୟରେ ପରିଣତ ହେଲା । ଓମାର ଖୈୟାମର ଇଂରାଜୀ ଅନୁବାଦ ଗୋଟିଏ ପୃଥିବୀ ପ୍ରସିଦ୍ଧ କବିତା । ଫିଜ୍‌ଜେରାଲ୍ଡ଼ ଏ କବିତାରେ ଯେଉଁ ଗାମ୍ଭୀର୍ଯ୍ୟ, ଉଚ୍ଛ୍ୱାସ ଓ ଶାନ୍ତିର ଆଭାସ ଦେଇ ଯାଇଛନ୍ତି ତାହା ଅତୁଳନୀୟ । ଏହାର ପଂକ୍ତିଗୁଡ଼ିକ ସବୁ ଧର୍ମର ସାର ଉକ୍ତି ଉପରେ ପ୍ରତିଷ୍ଠିତ । ଏ କବିତାର ଯୁକ୍ତିଗୁଡ଼ିକରେ ନାସ୍ତିକ ବାଦ ନାହିଁ । କେତେକ ପଂକ୍ତି ଦେଖାଯାଉ:—

ଦିନେ ସବୁ ଭୁଲିଇ ଗୋ ପିବ ସିନା ପ୍ରେୟସି,
"ସେ" ଏକା ରହିବେ କାଳି କାଳ ପାଇଁ ପ୍ରକାଶି

(୫୨ ଶ୍ଳୋକ)

ପୁନଶ୍ଚ

ଯେତେ ଯେତେ ଲୀଳା ଏଥି ସବୁର ଯେ କରତା
ଅନନ୍ତ କାଳର ଏଯେ କଉତୁକ ବାରତା
ଏ ସବୁର ରଚୟିତା ଅଛନ୍ତି ସେହି ଗୋ
ପୁଣି ଏ ନାଟକ ନଟ ସେହି ସିନା ସହି ଗୋ
ବସି ବସି ଦେଖୁଥାନ୍ତି ସବୁ ଦୂରେ ରହି ଗୋ

(୫୩ ଶ୍ଳୋକ)

ମାନବଙ୍କ ନାସ୍ତିକତା ନ ଥିଲେ ମଧ୍ୟ ମାନବ ଜୀବନର ନଶ୍ବରତା ବିଷୟରେ ଏ କବିତାରେ ଧାରାବାହିକ ଚିନ୍ତାଧାରା ଗତି କରିଛି:—

ଏ ସଂସାରରେ ଅମେ ସବୁ ସପନର କୁହୁଡ଼ି
ନିଶା ଅନ୍ଧକାରରେ ବୁଲୁଁ ସୁଖ ଦୁଃଖ ମୁଣ୍ଡାଇ

(୭୩ ଶ୍ଳୋକ)

ନଶ୍ବର ଜୀବନର ନିଷ୍ଠୁର ପରିଣତି ଉପରେ ଭିତ୍ତି କରି ଓମାର ପ୍ରମାଣ କରିଯାଇଛନ୍ତି ଯେ ଷଣ୍ଢାମାର୍ଗ ମାନବ-ଜୀବନରେ ବାସ୍ତବତା ଅଛି ।

ଏଇ ଯେ ମୃତ୍ୟୁ ! ତ୍ରଳସ୍ଥ ପତନ ମାଡ଼ି ପଡ଼ିବ
ତୋର ମୋର ସତ୍ତା ଯେଉଁ ଦିନ ଲୁଚି ବସିବ
ଅସିବା ଅଗରୁ ସେହି
ଷଣ୍ଢେ ହେଲେ ପ୍ରାଣସହି
ଗୁଣି ଯିବା ଜୀବନର ସୁଖ ଘେଲାଟାଏଁ ଟେ

( ୮୯ ଶ୍ଳୋକ )

ମୋଟ ଉପରେ ଅତୀତର ମୃତ ସ୍ମୃତି ଉପରେ ଚିନ୍ତିତ ନ ହୋଇ ଓ ଭବିଷ୍ୟତର ଅନିଶ୍ଚିତ ଭିତ୍ତି ଉପରେ ନିରର୍ଥକ ଆଶାନ୍ୱିତ ବା ଭୀତ ନ ହୋଇ ବର୍ତ୍ତମାନର ବାସ୍ତବତା ଭିତ୍ତି ଉପରେ ଜୀବନର ପ୍ରତ୍ୟେକ ମୁହୂର୍ତ୍ତକୁ ମଧୁମୟ କରି ଅତିବାହିତ କରିବାର ଏକ ଅକାଟ୍ୟ ଯୁକ୍ତି ଏ କବିତାର ମୂଳରୁ ଶେଷ ଯାଏ ଭରି ରହିଛି ।

ଏଥିରେ ଗୁରୁଙ୍କ ସୁଲଭ ନାସ୍ତିକତା ନାହିଁ; କିମ୍ବା କାଳ୍ପନିକ ସ୍ୱର୍ଗ ଆଶାର ମରୀଚିକା ନାହିଁ । ତାଙ୍କ ମତରେ ମନୁଷ୍ୟର ଶରୀର ମାଟିରେ ମିଶିଗଲେ, ତାର ଆଶା ଆକାଂକ୍ଷା କେବଳ ନିକ୍ଷିପ୍ତ ଭାବରେ ଓ ଅତୃପ୍ତ ଅବସ୍ଥାରେ ରହିଯାଏ । ସେ ଗୁଡ଼ିକ ଜୀବନ ଥାଉଁ ଥାଉଁ ଆସ୍ୱାଦନ କରିନେବାରେ ପ୍ରକୃତ ଉପାଦେୟତା ରହିଛି ।

୮୯ ଶ୍ଳୋକ ଠାରୁ ୯୦ ଶ୍ଳୋକ ପର୍ଯ୍ୟନ୍ତ ଘଟ ଓ କୁମ୍ଭକାର ସମ୍ବନ୍ଧରେ ଯେଉଁ ଆଲୋଚନା ରହିଛି ସେଥିରେ ସୃଷ୍ଟିପ୍ରକ୍ରିୟାର ପ୍ରାୟ ସର୍ବବିଧ ମତର ଆଭାସ ଅଳ୍ପ ବହୁତରେ ମିଳେ । ମୋଟ ଉପରେ ସମଗ୍ର କବିତାଟି ଅତ୍ୟନ୍ତ ରମଣୀୟ, ଉପଦେୟ, ରୁଚିକର ଅଥଚ ନିରାଟ ସତ୍ୟ ଉପରେ ପ୍ରତିଷ୍ଠିତ ଥିଲପରି ଜଣା ପଡ଼େ । ଦେବଦତ୍ତ ବାବୁଙ୍କ ପ୍ରତ୍ୟେକ ପଂକ୍ତିକୁ ଅନୁଧ୍ୟାନ କରି ପଢ଼ିଲେ ଜଣାଯିବ ଯେ ଏପରି କବିତା ପୃଥିବୀରେ ଅତି ଅଳ୍ପ ଅଛି ।

ଶେଷ ଅଙ୍କକୁ କେତେଗୁଡ଼ିଏ ଅତି ତିକ୍ତ ଅଥଚ ଆସ୍ୱାଦନୀୟ ଉକ୍ତି ମଧ୍ୟ ରହିଛି, ଯଥା:—

ହେ ପ୍ରଭୁ ବିଶ୍ୱ କରତା ! ତୁମରି ଇଙ୍ଗିତେ
ମାଟିର ଶରୀରେ ନର ଜନମେ ମରତେ

× × × ×

ଯେତେ ଯେତେ ପାପେ ପ୍ରଭୁ ନରର ଏ ମୁଖ
କଳଙ୍କିତ କରିଛ ହେ ଶିରେ ବିଶିଖ
ସେଥିପାଇଁ ପ୍ରଭୁ ! ଅଜି ଏ ମାନବଜାତି
ଅରପେ ଶ୍ରୀପଦେ କ୍ଷମା ଦେନ ବିଭୁପତି ( ୮୦ )

ପୁନଶ୍ଚ

ଆହା ପ୍ରିୟେ ! ତୋର ମୋର କରିଣ ବିଗ୍ରୁର ଗୋ
ଏ ଭଗ୍ନହେ କଲପନା ଟିକେ ବିଷାଦର ଗୋ
ନ ପାରିବା କି ଛିଣ୍ଡାଇ ?
ପାଦେ ତାକୁ ଦଳି ଦେଇ
ଠିକ ଠିକ କରି ତାକୁ ଟେକିଇବା ନିରି ଗୋ
ପୁଣି ସବୁ ଗଢ଼ି ଥରେ ଦେବା ନୂଆ କରି ଗୋ
ହୃଦର ଆକାଙ୍କ୍ଷା ଗୁଡେଇଁ ଗଢ଼ିବା ତିଆରି ଗୋ

(୧୦ )

ମୋଟ ଉପରେ କବିତାର ମୂଳରୁ ଶେଷଯାଏ ଗୋଟିଏ ଦାର୍ଶନିକ ପରିକଳ୍ପନାର ବିକାଶ ପରିଲକ୍ଷିତ ହୁଏ । ଆଶା କରାଯାଏ, ପୃଥିବୀ ବିଖ୍ୟାତ ଏହି କବିତା ଓଡ଼ିଆରେ ଅନାଦୃତ ହେବ ନାହିଁ ।

ଲେଖକ ।







( ୧ )

ଉଠ ଗୋ ! ଉଠ ଗୋ ! ସ୍ୱର୍ଣ୍ଣ !
ଖୋଲ ଗୋ ! ଅଳସ ଅଖି ;
ଯାମିନୀ ଯାଉଛନ୍ତି ବିତି,                ଉଇଁଛନ୍ତି ରବି ।
ଉଡେଇ ଗଲେଣି ତାରା ;
ଉଜ୍ଜ୍ୱଳି ଗଗନ ସାରା
ଉଠେଣି ଗଗନେ ଭାନୁ,                କନକ ଛବି ॥
ପ୍ରାଚୀ ଗଗନ ମୂଳେ ଗୋ
(ଏକି) ଅଭିନବ ଛବି ଦୋଳେ ଗୋ
କନକ କିରଣେ                ମନ୍ଦିର ଚୂଡ଼ା
ଝୁଲୁଁଲଣି ଦଳେ ଦଳେ ଗୋ ।

( ୨ )

ମଉଳିବା ଅଙ୍ଗୁଁ ଉଷା ଅରୁଣିମା ଶିଖା ଗୋ
ଲିଭିଗଲା କିଏ ମୋତେ କହିଦେବ ପଢ଼ି ଗୋ
ମନ୍ଦିର ଭିତରେ ରହି
କିଏ ସେ ଡାକିଲା ସହି,
"ସଜ ତ ହେଲଣି ସବୁ ଅରତିର ଡାଲି ଗୋ -
"ବାହାରେ ବହେ ଏ କିଆଁ ହେବା ମଧୁ ଥାଳି ଗୋ ?
ଅଳସ ନୟନ ତା'ର ନୋହିବ କି ଖୋଲା ଗୋ"





( ୩ )

ପହିଲି କୁକୁଡ଼ା ଯେବେ ଉଠିଲଣି ଡାକି ଗୋ
ମନ୍ଦିର ବାହାରେ ଥିଲେ ଯେତେ ଲୋକ ବାକି ଗୋ
ସକଳେ ଉଠିଲେ କହି
“ଖୋଲ ଏ ଦୁଆର ଭାଇ !
“ଦୁଦିନର ଏ ଦୁନିଆଁ, ବେଳଟାଏ ବଞ୍ଚିଛି
“ଫେରିଗଲେ ଥରେ, ଆଉ ନ ଆସିବୁ ଏଥିକି
“ସବୁ ଏ ସଂସାରେ ଭାଇ, ଦୁଦିନର ସାଥିକି ।”

( ୪ )

ଫଗୁଣି ପୁନେଇଁ ଆଜି ନୂଆ ଫଗୁଲେ ଗୋ
ବହୁଦିନ ଭୁଲି କେତେ ସାଙ୍ଗ ସାଥି ମେଳ ଗୋ
ବିମୁଗ୍ଧ ଅନ୍ତର ମୋର
ଖୋଜଇ ବିଜନ ତୀର,
ଦେବତାର କର ଲାଗି ମଲ୍ଲୀ ଯହିଁ ଫୁଟେ ଗୋ
ଅମରତା ଆଣିଦିଏ ମରତର ତଟେ ଗୋ
ଧରାତଳେ ସରଗର ଛବି ଯହିଁ ଲୋଟେ ଗୋ







( ୫ )

ଯାଇଛି ଉଡ଼ିଭେର ସେହି ବୃନ୍ଦାବନ ଧାମ ଗୋ
କଦମ୍ବ ଫୁଟଇ ଯହିଁ ଚିର ଅଭିରାମ ଗୋ
ମୋହିନୀର ସୁଧାବଂଶୀ
କହ କାହିଁଛି ସୁନ୍ଦର ?
ତଥାପି ରସାଳ ଟେରେ ସୁଧାମୟ ଫଳ ଗୋ
ଫୁଟିଛି କାନନେ ମଲ୍ଲୀ ନିଅଳୀ ବଉଳ ଗୋ
ବସନ୍ତ ଉତ୍ସବେ ନାଚି ଉଠେ ଟେଣ୍ଡଳ ଗୋ ।

( ୬ )

ନୀରବିଛି ସିନା ଗୋଟେ ମୁରଲୀର ସ୍ୱର ଗୋ
ତଥାପି ତ ଟିକ କଟରେ ଧରଣୀ ମୁଖର ଗୋ
"ଦିଅ ସୁଧା ! ସୁଧା !" କହି
ଉଡ଼ି ବୁଲେ ଯହିଁ ତହିଁ
ତାର ସ୍ୱରେ ଡାକେ "ଦିଅ, ରସ ସୁଧାଭର" ଗୋ
ଚୂତ ମୁକୁଳକୁ କରିବାକୁ ଅନୁସ୍ୱର ଗୋ
ଅରୁଣ ପଲ୍ଲବ ଦଳେ ମଣ୍ଡିବାକୁ ଧର ଗୋ







( ୭ )

ଉଷ୍ମ ଭେଟେବୁ ଅସ୍ତ ସଖି ଗୋ !
(ଆସ) ପ୍ରାଣେ ପ୍ରାଣ ଦେବା ଯୋଖି ଗୋ !
ଫେଇଦଅ ଅନୁରାଗ— ଅବରଣି ଯେତେ ଗୋ
ଜୀବନର ମଧୁସ୍ରୋତେ
ଭାସିବା ଗୋ ! ଅବିରତେ
ବସନ୍ତ ଖେଳାଇ ଦେବା ଏ ମର ମରତେ ଗୋ
ବେଳ ଯାଏ ବହି ଗୋ
(ଏତ) ଦୁଦିନର ଖେଳ ସହି ଗୋ
ସମୟ ଗଡ଼େଇ ଉଡ଼ି ଗୁଲ୍‌ପିଦ
(ଦେଖ !) ଉଡ଼ି ଚଳିଲଣି ସେହି ଗୋ !

( ୮ )

ଜୀବନର ସୁଧା ଯାଏ ଧୀରେ ଧୀରେ ବହି ଗୋ
ସୁଖ ହେଉ, ଦୁଃଖ ହେଉ, ବହିଗଲେ ସେହି ଗୋ
କିବା ଟା ଗଜଲରେ
କି ସ୍ୱପ୍ନରେ କି ବଜାରେ
ଜୀବନ ସଉଦା ଯାଏ ଧୀରେ ଧୀରେ ସରି ଗୋ
ଗଛରୁ ପତର ଝଡ଼ି ପଡ଼ିବାର ପରି ଗୋ
ଦିନୁଁ ଦିନୁଁ କ୍ଷୟ ହୁଏ ଜୀବନର ଶିରୀ ଗୋ



( ୯ )

ନିତ୍ୟ ତ ସକାଳେ ଫୁଟେ ଶତ ଶତଦଳ ଗୋ
କେତେ ପୁଣି ଯାଏ ଲୁଚି କାଲିର କମଳ ଗୋ
ଆଜି ଫୁଟେ କାଲି ଝଡ଼େ
ଭୂଇଁରେ ବିଛୁଡ଼ି ପଡ଼େ
ଦୁନିଆଁରେ ଲଗିଛି ଏ ଖେଳ ଚିରନ୍ତନ ଗୋ
ଆଜି ଯେ ଜାଗ୍ରତ କାଲି ନୁହେଁ ସେ ଚେତନ ଗୋ
ରଜା ମହାରଜା ଏଥି କେ କରେ ଗଣନ ଗୋ ?

( ୧୦ )

ଯେ ଯିବାର ଯାଉ ଚୁଲି ନ କର ଶୋଚନା ଗୋ
ରଜା, ମହାରଜା, ହେବ କି କର ଗଣନା ଗୋ ?
ତୁମର ମୋହର, ସହି,
କି ହାନି ? କି ଲଭ ତହିଁ ?
ବୀର ଯେ, ସେ ଲୋଡ଼ନ୍ତୁ ରଣ ଅବିରତ ଗୋ
ବିଳାସୀ ଯେ, ଝୁରୁଥାଉ ଭୋଜନ ଅମୃତ ଗୋ
ତୋର ମୋର ଏଥି କାହିଁ ହେବା ବିଚଳିତ ଗୋ ?



( ୧୧ )

ଗୁଲ ସହ ତୋର ମୋର ପିବା, ହୃଦ ଫେଇ ଗୋ,
ସବୁଜ ଧରଣୀ ଯହିଁ ନୟନ ରଞ୍ଜଇ ଗୋ।
ମରୁଭୂମି ଉଠେଦେଶେ
ଶସ୍ୟ କ୍ଷେତ ଯହିଁ ମିଶେ,
ରାଜା, ରଙ୍କ, ଭେଦାଭେଦ ନାହିଁ ଯେଉଁ ସ୍ଥଳେ ଗୋ।
ଅନନ୍ତ ଅଖଣ୍ଡ ଶ୍ୟାମ ଭୂମି ଯହିଁ ଝଳେ ଗୋ।
ଈଶ୍ବରଙ୍କ ଚିର କୀର୍ତ୍ତି ସମ ଧରାତଳେ ଗୋ।

( ୧୨ )

ସେଇ ଧରଣୀର ବୁକେ, ପାଶେ ଥିବ ପ୍ରିୟା ଗୋ !
କଳସୀଏ ସୁରା ଆମ୍ଭ ପାଖେ ଥିବ ଥୁଆ ଗୋ !
ଅମୃତ ଭୋଜନ ତହିଁ
ସଙ୍ଗେ ସଙ୍ଗେ ଥିବ ରହି
କବିତାର ବହି ଖଣ୍ଡି ଥିବ କରତଳେ ଗୋ !
ବସିଥିବା ଦୁହେଁ ସେହି ସହକାର ମୂଳେ ଗୋ !
(ଯେବେ) ମୁଖର ହେବ ଧରଣୀ ତବ ଗୀତ ବୋଲେ ଗୋ !
(ତେବେ) ସରଗ ଆସିବ ଖସି, (ସେଇ) ମରୁଭୂମି ତଳେ ଗୋ !







( ୧୩ )

ଦୁନିଆଁର ସୁଖ ପାଇଁ ଝୁରେମରେ ନର ଗୋ
କେବା ଝୁରେ ସ୍ୱର୍ଗ ଲଭ ଆଶା ପୋଷି ଚିର ଗୋ
ଯୋଗୀ ଋଷି କଲପନା
ସରଗର ଛବି ସିନା
ଜୀବନର ବାସ୍ତବତା ସାରଥି ମରତେ ଗୋ
ମିଛ ଆଶା କର ହାରଯାନ୍ତି ନର କେତେ ଗୋ
ଦୂର ମରୀଚିକା ଦଶେ ସୁନ୍ଦର ଜଗତେ ଗୋ

( ୧୪ )

ବୃଥାଆଣି ଜାଲପର ବୃଥା ସବୁ ଆଶା ଗୋ
ଏ ଜୀବନ ଅନ୍ତେ ଆଜ କାହିଁରେ ଭରସା ଗୋ ?
ଭବିଷ୍ୟ ଗରଭେ କିସ
ଅଛି କି ଅମୃତ, ବିଷ
କେ କହିବ ? ଭବିଷ୍ୟତ ମରୀଚିକା-ମୟ ଗୋ
ଭିଜେଲ ଭିଜେଲ ପରମାୟୁ ହୁଏ ସିନା କ୍ଷୟ ଗୋ
ଏଇ ମୋ ନିଃଶ୍ୱାସେ ପ୍ରାଣ ଲଭପାରେ ଲୟ ଗୋ

( ୧୫ )

ଦେଖ ଏ ଫୁଟିର ଅଟେ ଗୋଲାପ କଳିକା ଗୋ
ହସି ହସି ଗାଏ ତାର ଜୀବନ ଗୀତିକା ଗୋ
କହେ ହସି "ଦେଖ ଭାଇ
"ବିକଶି ଉଠିଣି ମୁହିଁ
"ତୋଳ, ତୋଳ, ବେଗେ ମୋତେ; ଚିର ବନ୍ଧୁ ମୋର ଗୋ
"ପଦ୍‌ତଳେ ଫିଙ୍ଗିଦିଅ ଏ ବପୁ ସମ୍ଭାର ଗୋ
"ଉପଭୋଗ ପାଇଁ ବେଳ ନ ରହିବ ଚିର ଗୋ"

( ୧୬ )

ଧରଣୀର ବୁକେ ଯେତେ ଭାଗ୍ୟ କରେ ଭୋଗ ଗୋ
ଯେବା ଫିଙ୍ଗେ ଦୂରେ ସୁଖ ସୌଭାଗ୍ୟ ସୁଯୋଗ ଗୋ
ଦୁହେଁ ତ ନଶ୍ୱର ଭବେ
ଦିନେ ତ ଯିବେ ସରବେ,
ମାଟିର ସବୁର ଘଟ ମାଟିତଳେ ମିଶେ ଗୋ
ସୁନେଲି ରୁପେଲି କିଛି ନାହିଁ ତହିଁ ଶେଷେ ଗୋ
ଯେ ଯାଏ ସେ ଯାଏ; ତହୁଁ ଫେର କେବା ଆସେ ଗୋ ?



( ୧୭ )

ନଶ୍ବର ଏ ଶାଳରେ ହୁଁରମଣରେ ସିନା ନାଇ ଗୋ
କାଟଲା ଭାସ୍ମା ପାଲଟେଇ ପାଉଁଶ ଅସାର ଗୋ
କେତେବ ଟା ଷଣିକ ପାଇଁ
ଜଠର ଅଙ୍କାଟଲ ତେଇଁ
ଯଟେ ଗଲି ପରଯଟେ ଲଭିବା ତା' ସାର ଗୋ
ମନ୍ଦୁହୁଟେମ ଲିଟେଲ ଟେଟେଣ୍ଟ ବନଘାର ପାର ଗୋ
ସବୁ ଏ ଜଗତେର ଜାଗତେର ନୀଳ, ଝିଟିକା, ଅସାର ଗୋ !

( ୧୮ )

ଏ ଦୁନିଆଁ —ଦୂରବାଟେ ଭଙ୍ଗା ରଟିଘର ଗୋ
ଦିନ ଆଉ ରାତି, ଏଇ ଦୁଇଟି ଦୁଆର ଗୋ
କେତେ ରାଜା ମହାରାଜା
ଟେଜାଇ ଠେମକ ବାଜା
ଗଲେଣି ସ୍ବା' ବଟେଷ କରି କେତେ ଆଡ଼ମ୍ବର ଗୋ
ଯା' ଘଡ଼ି ଟେଧ ଭୋଗ କରି ପଲାନ୍ତି ମୁକର ଗୋ
ଶଜାଡ ଜା' ଅନ୍ତୁ ଏଥି କେ ରହିବ ଚିର ଗୋ ?



( ୧୯ )

ଥିଲା ଯହିଁ ବାରବାଟୀ ଦୁର୍ଗ ବୀର ଭୂଇଁ ଗୋ
ଏବେ ତହିଁ ଗାଈଗୋରୁ ଚରୁଛନ୍ତି ଯାଇଁ ଗୋ
ସେ ଭଙ୍ଗା ପାଚିରି ତଳେ
ବୁଢ଼ୀଅଣ୍ଡୀ ବସା କରେ
କାହିଁ ସେ ଜିଣିଲା ତାର ବୀରପଣ କାହିଁ ଗୋ ?
ତା ସମାଧି ଏବେ ଚୋପି, ଘାସ ରହିଛୁଇଁ ଗୋ
ଭଟଟି ତା ଚିରନିଦ୍ରା ଭାଙ୍ଗି କେ ପାରିବ ଗୋ ?

( ୨୦ )

କାହିଁ ସେ ପ୍ରାସାଦ, ସାତତାଲପୁରୀ ଯାର ଗୋ
ଆକାଶକୁ ଚୁମ୍ବୁଥିଲା ଟେକ ଯାର ଶିର ଗୋ ?
ଛତିଶି ଧୀଅନ୍ତ ରାଜା
ହଜାର ହଜାର ପ୍ରଜା
ମାରନ୍ତି ମୁଣ୍ଡିଆ ଯାର ଭରୁଣ୍ଡିର ତଳେ ଗୋ
ଉଭେଇ ଯାଇଛି ଏବେ କାଳର କବଳେ ଗୋ
ଏକେଲା ଚଢେଇ ଏବେ ବସି ଗଛଡାଳେ ଗୋ
"କାହିଁ, କାହିଁ, କାହିଁ" ବୋଲି ଡାକେ ଭଙ୍ଗା ଗଳେ ଗୋ !







( ୨୧ )

(ତେବେ) ଆସ, ଆସ, ପ୍ରିୟା, ଆସ ଗୋ
(ମୋର) ଜୀବନ କର ସରସ ଗୋ
ଆଜିର ବାସ୍ତବ ସୁରେ
ଯାଉ ଦୂରେ—
ଯାଉ ଦୂରେ:
କାଲିର ବିଷାଦ ଗାଥା, ଅତୀତର ଖେଦ ଗୋ
ଯାଉ ଦୂରେ ଭବିଷ୍ୟତ, ଭୟ ଅବସାଦ ଗୋ
ପାହିଲେ ରଜନୀ କାଲି, କି ହେବ କେ ଜାଣେ ଗୋ ?
କେ କହିବ କାଲି ଯାଏଁ ବଞ୍ଚିବି କି ପ୍ରାଣେ ଗୋ ।
ଅତୀତରେ ମିଶି ଅବା ଯିବ ଅକାରଣେ ଗୋ
ସହସ୍ର ସହସ୍ର ଯୁଗ ସଙ୍ଗେ ହେବ ଗଣେ ଗୋ ।

( ୨୨ )

କାଲି ଯାଠରେ ଯାଠର ଏଇ ଦୁନିଆଁର ବୁକେ ଗୋ
ରମଣୀୟ, ଲୋଭନୀୟ, ମଣୁଥିଲେ ଲୋକେ ଗୋ
ମଧୁରସ ଜୀବନର
ଲୁଣ୍ଠି ଥରେ କି ଦୁଥର
ସମସ୍ତର ଗଲା ପଥେ ଚଲେ ଯେଷି ହୋଇ ଗୋ
ଚରମ ଶାନ୍ତିରେ ଏବେ ଚିର ଛନ୍ତି ଶୋଇ ଗୋ ।



( ୨୩ )

ତାଙ୍କର ଯାଗାରେ ଆମେ କରୁଁ ଏବେ ଲୀଳା ଗୋ
ଦୁଦିନର ଅଡ଼ମ୍ବର ମତୁଆଲ ଖେଳା ଗୋ;
ଆମେତ ଚଳିବା କାଳେ
ଏ ମହାଧରଣୀ ତଳେ
ଆମର ଯାଗାରେ ପୁଣି କେବା ମାଡ଼ି ବସି ଗୋ
ଦୁଦିନ ପରରେ ଧରା ଥିବାଇବ ହସି ଗୋ
କାହାପାଇଁ ଛାଡ଼ିଯିବା ଏ ଶିରୀ, ପ୍ରେୟସି ଗୋ ?

( ୨୪ )

ମୋ ବଗୁରେ, ଯେତେ ଯହିଁ ଫୁଟେଇ ଗୋଲାପ ଗୋ
ଯହିଁ ରଙ୍ଗ ଲବ ତାର ଦେଖ ଅପରୂପ ଗୋ
ସବୁଟି ରହିଛି ପୋତା
ବୀରର ଛେଦିତ ମଥା;
ବୀରର ରକତ ବିନା ଏ ଶୋଭା କି ମିଳେ ଗୋ ?
ପୁଣି ଦେଖ, ଯେତେ ଶ୍ୟାମଲତା ଧରିତଳେ ଗୋ
ଦିନେ ସରୁ ଝୁଲୁଥିଲୁ କେ ସୁନ୍ଦରୀ ଗଳେ ଗୋ
କାଳକ୍ରମେ ଢଳି ପଡ଼ିଅଛି ଧରା କୋଳେ ଗୋ ।







( ୨୫ )

ଏଇ ଯେ ତଟିନୀ ତଟେ ଶ୍ୟାମ ଆସ୍ତରଣେ ଗୋ
ମୃଦୁ ତନ୍ଦ୍ରାରେ ସଖି, ବିଶ୍ରାମୁଛି ଷଣେ ଗୋ
ଏ ଶ୍ୟାମ ସୁଷମା ତାର
ଦରଶ ଜନ ମନୋହର
କେ ଜାଣେ କେଉଁ ସୁନ୍ଦରୀର ଅଧରୁଁ ମଟୁର ଗୋ
ଅସିନ୍ତୁ ତା ମଧୁରତା, ତା ଶୋଭା ସମ୍ଭାର ଗୋ
ଧୀରେ— ଅତି ଧୀରେ ; ତାରେ ଅର୍ପ ଦେହଭାର ଗୋ ।

( ୨୬ )

ତୁମ୍ଭ ଚକ୍ଷୁରେ ଦେଖୁ ସଖି, ଏ ବିଶ୍ୱର ସାର ଗୋ
ଏ ଜୀବନ ନୁହେଁ କେବେଁ ବୃଥା କରିବାର ଗୋ
ଦିନେ ତ ଚୂଳିରେ ମିଶି
ଯିବ ଦେହ, ଦିନ ନିଶି,
ଧୂଳିରେ ମିଶିଣ ଟୁଳି ତଳେ ପଡ଼ିରହି ଗୋ
ଯୁଗ ଯୁଗ ଜଡ଼ଭାବେ ପଡ଼ିଥିବ ସେହି ଗୋ
ସଙ୍ଗୀତ, ରସାଳ; ପ୍ରିୟା, ପିକ କାହିଁ ତହିଁ ଗୋ ?
ଯୁଗ ଯୁଗ ବିତିଯିବ, ଅନ୍ତ ତାର ନାହିଁ ଗୋ ।





( ୨୭ )

ଆଜିର ପ୍ରେରଣା ପାଇଁ ହୁଏ ଯେବା ସଜ୍ଜ ଗୋ
କାଲିର ସମ୍ଭୋଗ ଆଶେ ଦୂରେ ଯେବା ଅଜ୍ଞ ଗୋ
ଦୁହେଁ ମୂର୍ଖ ଜ୍ଞାନହୀନ
ବ୍ୟର୍ଥ ତାଙ୍କ ଜୀବନ
ଅନ୍ଧକାର ମନ୍ଦିରରୁ ଏ ଦୁହିଙ୍କ ପାଇଁ ଗୋ
ବିବେକର ବାଣୀ ପରି ଡାକୁଅ ଡାକଇ ଗୋ
“ମୂର୍ଖ ତୁମ୍ଭେ ; ସୁଖ ତବ ନିଜଗତେ ନ ହିଁ ଗୋ ।

( ୨୮ )

ସପନରେ କାନେ କିଏ କହୁଥାଏ ମୋତେ ଗୋ
“ଫୁଟିବ ଫୁଟିବ ଫୁଲ ଫୁଟିବ ପ୍ରଭାତେ ଗୋ
ସପନ ଭାଙ୍ଗନ୍ତେ ମୋର
ପୁଣି ଜାଗି ଉଠେ ସ୍ୱର
“ଫୁଟିବ ପ୍ରଭାତେ ଫୁଲ ନୟନ ରଞ୍ଜାଇ ଗୋ
“ମାନବ ଫୁଟିବ ଫୁଲ ଝଡ଼ିଯିବା ପାଇଁ ଗୋ
“ଫୁଟେ ଫୁଲ ମରିବାକୁ ଯୁଗ ଯୁଗ ପାଇଁ ଗୋ ।”







( ୨୯ )

ଯେତେ ଯୋଗୀ ଋଷି ଜ୍ଞାନ କରନ୍ତି ସାଧନ ଗୋ
କହୁଥାନ୍ତି ସ୍ୱର୍ଗ, ମର୍ତ୍ତ୍ୟ, ପାପ, ପୁଣ୍ୟ ଜ୍ଞାନ ଗୋ
ମୂର୍ଖ ସବୁଟି ସେମାନେ
ମରନ୍ତି ତ ନିଜେ ଦିନେ
ବୃଥା ହୁଏ ତାଙ୍କ ଯୋଗ, ଦମ୍ଭ, ଅଭିମାନ ଗୋ
ଧୂଳିରେ ତ ମିଶେ ତାଙ୍କ ଅସାଧ୍ୟ ସାଧନ ଗୋ
କେ କାହିଁ ଶୁଣିବ ତାଙ୍କ ଯୁକ୍ତି ସନାତନ ଗୋ ?

( ୩୦ )

ଜିଲ୍ଦନ୍ଁ କେତେ ସାଧୁସନ୍ଥଜନ ମେଳେ ଗୋ
ଶୁଣୁଥିଲି ଯୁକ୍ତି ତାଙ୍କ ବଡ଼ କୁତୂହଳେ ଗୋ
ଥରେ ଥରେ, କେତେଥର,
ଶୁଣିଲି ବାରକୁ ବାର
ଶୁଣି ଶୁଣି ଥକିଲି ମୁଁ; ସବୁ ତ ଅସାର ଗୋ
ତିଳେହେଁ ତ ନ ବଢ଼ିଲା ମୋ ଜ୍ଞାନ ଭଣ୍ଡାର ଗୋ
ଝଙ୍କାରରେ କାନ ମୋର ହେଲା ଯା' ବଧିର ଗୋ ।





( ୩୧ )

ଶୁଣି ଶୁଣି ତାଙ୍କ ବାଣୀ ଜ୍ଞାନବୀଜ ବୁଣି ଗୋ
ନିଜ ହାତେ ବଢାଇଲି ପାଣିପାଗ ଜାଣି ଗୋ
ଏତକି ଫଳିଲା ଫଳ
ଅନନ୍ତ ଏ ମହାକାଳ
ଏତକି ମାତର ଜ୍ଞାନ ଲଭିଲି ବିଶେଷେ ଗୋ
"ଝଡ଼ ପରି ଆସିଛି ମୁଁ ଏ ଧରଣୀ ଦେଶେ" ଗୋ
"ବତାସ ପରାୟେ ଯିବି ବାହାରି ମୁଁ ଶେଷେ" ଗୋ ।

( ୩୨ )

ଏ ଜଗତେ ଅସିଛି ମୁଁ; ଜାଣେ ନାହିଁ କାହିଁକି
କେଉଁ ଦେଶୁଁ ଅସିଛି ମୁଁ; ନ ଜାଣେ ତାହିଁକି
କେମନ୍ତେ ଆସିଲି ଭାସି
ଜଳସ୍ରୋତ ସଙ୍ଗେ ମିଶି
ଇଚ୍ଛା-ଅନିଚ୍ଛାରେ ମୋର ଯାଏ ଆସେ କେତେ ଗୋ ?
ପୁଣି ଶେଷେ ଯିବି ଚାଲି ବତାସର ସ୍ରୋତେ ଗୋ
ନ ଜାଣିବି କେଉଁ ଦେଶେ, ମୋର ଅଜାଣତେ ଗୋ ।







( ୩୩ )

କିଏ ମୁଁ ନ ଜାଣେ ପୁଣି କେଉଣେ ଏଉଣେ ଅସିଛି
କେଉଠି ପୁଣି ଯିବ ଚାଲି ନ ଜାଣୁଁ ମୁଁ ଭୁସର
ହୃଦେ ମୋ ଜାଗଇ ରହି
ଅନନ୍ତ ଏ ପ୍ରଶ୍ନ ସହି
ଜାଣି ଜାଣି ଧାତା ହୃଦେ ଅନୁତାପ ଭିତର କି ?
ସଜାଇ ସେ ରଖିଚନ୍ତି ତେଣୁ ଧରଣୀରେ କି
ରସାଳର ସୁଧାମୟ ଫଳ ଥରେ ଥରେ ଗୋ
ଧରିବାକୁ ମୋର ଏଇ ମୂର୍ତ୍ତି ଏକାଥରେ ଗୋ ?

( ୩୪ )

ଧରଣୀର ବୁକୁ ତେଜି ଉଠିଲି ମୁଁ ଦିନେ ଗୋ
ସପତ ଧରିତ୍ରୀ ଡେଇଁ ଉଠିଲି ଗଗନେ ଗୋ
ଶେଷେ ଦୁ ବସିଲି ଦିନେ
ସରଗର ସିଂହାସନେ
କେତେ କେତେ ଗଣ୍ଠି ମୋର ବାଟେ ଗଲା ଫିଟି, ଗୋ
ମାଳିକ ହେଲେହେଁ ମୁହିଁ ଯେତେ ଗୁଣିଗିଟି ଗୋ
ନ ଫିଟିଲା ମାନବର ମହାଭାଗ୍ୟଗଣ୍ଠି ଗୋ ।





( ୩୫ )

ଦେଖିଲି ଦୁଆର ତା'ର ନ ପାଇଲି ଚାବି ଗୋ
ଓଢ଼ଣାଏ ଥିଲା; କିନ୍ତୁ ନ ଦିଶିଲା ଛବି ଗୋ
ତୋର ମୋର କଥା ସହି
କ୍ଷଣେକ ଶୁଣିଲି ରହି
କ୍ଷଣେ ପୁଣି ନୀରବିଲା ମୁରଲୀର ସ୍ୱର ଗୋ
ଦେଖା ଆଜ ନ ମିଳିଲା ତୋର ଆଉ ମୋର ଗୋ
ନୀରବ ହୋଇଲା ସ୍ୱର୍ଗ ଧରଣୀର ଦ୍ୱାର ଗୋ ।

( ୩୬ )

ସପତ ଧରଣୀ ମୋତେ ନ ଦେଲା ଉତ୍ତର ଗୋ
ନ ଦେଲା ଉତ୍ତର ପୁଣି ସପତ ସାଗର ଗୋ
ଉଚ୍ଛଳ ତରଙ୍ଗ ନୀଳ
ସାଗର ଫେନିଳ ଜଳ
ବିଜନ ବିଧାତା ଅଶେଷ ଝୁରି ସିନା ମରେ ଗୋ
ମୋ ପ୍ରଶ୍ନର ଉତ୍ତର ସେ ଦେଇ କିବା ପାରେ ଗୋ ?
ଅନନ୍ତ ଆକାଶ ଅହା ! ଚିର ଅଗୋଚର ଗୋ
ଅନନ୍ତ ଜ୍ୟୋତିଷ୍କରାଶି କରେ ଯା ଭାସ୍ୱର ଗୋ
ଦିନ ପରେ ରାତି ସହି
ଲୁଚକାଳି ଖେଳେ ରହି
ସେ ମଧ୍ୟ ପାରିଲା ନାହିଁ ସନ୍ଦେହ ମୋ ନାଶି ଗୋ
ଭ୍ରମି ଭ୍ରମି ଥକିଲି ମୁଁ ନିଷ୍ଫଳେ ପ୍ରେୟସି ଗୋ ।



( ୩୭ )

ଶେଷେ ଜାଗି ଉଠେ ମୋର ହୃଦୟେ ହୁଙ୍କାର ଗୋ
ଋଷିପ୍ରାଣେ ଜାଗି ଯେମନ୍ତ ଉଠଇ ଓଁକାର ଗୋ
ଏ ବିଶ୍ୱ ବ୍ରହ୍ମାଣ୍ଡ ପରେ
ଓଢଣୀ ଦେଇ ଟାଣି ଧରେ
ତା ପଛେ ଦେଖିଲି ମୁହିଁ ରଶ୍ମି ଅପରୂପ ଗୋ
ଅନ୍ଧକାର ମଧ୍ୟେ ଜଳି ଉଠିଲା ପ୍ରଦୀପ ଗୋ
ଚିତ୍ତ କହିଲା "ଜ୍ଞାନପଥ କଠିନ ଜଗତେଟି
"ଦୃଢ ବିଶ୍ୱାସଟି ନାଏ ସୁଧାମୟ ପଥେଟି ।"

( ୩୮ )

ତେଣୁ ମୁଁ ଅସିଲି ଫେରି ଏ ମରତ ତଳେ ଗୋ
ଏଇ ରଙ୍ଗୀ ଚଟିଘରେ—ଏଇ ପାନ୍ଥଶାଳେ ଗୋ
ଆଗ୍ରହେ ରହିଲି ମୁହିଁ
ଜାଣିବ ବୋଲି ଗୋ ସହି
ଜୀବନର ମଧୁମୟ ଗୁପତ ମନ୍ତ୍ରର ଗୋ
କାନେ କାନେ କିଏ ତେଣୁ କହିଗଲା ମୋର ଗୋ
"ଏ ଜୀବନ ଥାଉଁ ଥାଉଁ
"ଭୋଗେ ମାତ ବେଳ ଯାଉଁ
"ଥରେ ଗଲେ ମର ଆଉ ନ ଅସିବ ଫେରିଟି
"କାହିଁକି ମରିବ ଦିନରାତ ବୃଥା ଜରିଟି" ।



( ୩୯ )

ଯେ ମୋତେ କହିଲା, ସେ ତ ଧରଣୀର ମାଟି ଗୋ
ଏତେଦିନେ, ସହି, ତାର ଫିଟିଗଲା ଘାଟି ଗୋ
କହି ସେ ଯାନ୍ତେ ପଳାଇ
ଆଚମ୍ବିତ ଗଲି ହୋଇ ;
ଦିନେ ତ ଚେତନ ସେହୁ ଥିଲା ଧରା ବୁକେ ଗୋ !
ସୁଧାପାନେ ମାତି ଦିନ କାଟୁଥିଲା ସୁଖେ ଗୋ !
ଅସ୍ଥିର ହୋଇ ମୁଁ ଯେ ଚୁମ୍ବିଲି ସେ ପାଷାଣେ
ଅହୋ ! ଯେବେ ଧରାବୁକେ ବଞ୍ଚିଥାନ୍ତା ପରାଣେ
କେତେ ମୁଁ ଚୁମ୍ବନ ତାରେ ଦେଇଥାନ୍ତି, କେ ଜାଣେ ?
ପ୍ରତିଦାନେ ତାର, ମୁଗ୍ଧ କରନ୍ତି ମୁଁ ଅପଣେ !

( ୪୦ )

ଦିନେ ତ ପଡ଼ୁଛି ମନେ ଯାଉଥିଲି ବାଟେ ଗୋ
କୁମ୍ଭାରେକ ଗଢ଼ୁଥିଲା ତହିଁ ମାଟିଘଟେ ଗୋ
ଦଳୁଥିଲା କଞ୍ଚାମାଟି
ଗଢ଼ିବ ସେ ଘଟିବାଟି ;
ସକରୁଣ ସ୍ୱରେ କହି ଉଠିଲା ସେ ମୃତ୍ତିକା
"ଧୀରେ, ଧୀରେ, ଦଳ, ଭାଇ, ଶୁଣ ମୋର ଗୀତିକା" ।



( ୪୧ )

ବିଗୁଳିଲ୍ ସତ, ସତ, ସତ, ଏତ କହିଚ
ଯୁଗ ଯୁଗ ଧରି ମୁଁ ତ ଶୁଣି ଏହା ଅସିଚ
ଏହିପରି ପିଣ୍ଡୁଳାଏ
ମାଟି ଦଲି ଅଙ୍କାଯାଏ
ବିଧାତା ପୁରୁଷ ସିନା ଗଢେ ନର ଶରୀର !
ମାଟିରୁ ଉଦ୍ଭବ ତାର; ଶେଷେ ସେଇ ମାଟିର !

( ୪୨ )

ଜୀବନର ଯେତେ ସୁଖ ଦେଉ ଅମେ ଫିଙ୍ଗି ଗୋ
ଧରଣୀର ବୁକେ ପଡ଼ି ଯାଏ ସେକି ଭାଙ୍ଗି ଗୋ ?
ଧୂଳିତଳେ ରୁହିଁ ତାରେ
ରହେ ବ୍ୟଥିତ ଅନ୍ତରେ
ବନ୍ଧୁଜନ ଭୁଲି କାର ପୋଷିତ ପରାଣ
ବନ୍ଧୁଦାନଙ୍କୁ ଧାଲ୍ଟିଛି ଯାହା ଅଜା ଗାପାଣେ
ଯୁଗ ଯୁଗ ଧରି ମାଟିଁତଳେ ପଡ଼ି ରହିଣ



( ୪୩ )

ସ୍ୱରଗର ସୁଧା ଆଜେ କଳିଅର କୁସୁମ
ଟିଲ୍ସ ଉପରେ ସ୍ୱର୍ଗ ଗୁହୁଁ ଦେଖେ ସୁଷମ ;
ଓଶର ସନ୍ତାନ ସେତ
ଆମର ପର ଗୋ ମିତ ;
ତାହାର ପରକି ଅମେ ଗୁହୁଁ ରହୁ ଆକାଶେ
ପିଇବାକୁ ସରଗର ଅମୃତରୁ ଟିକିଏ ?
ଗୁହୁଁ ରହୁ ଯେତେ ଦିନେ ବିଧାତାର ଆଦେଶେ
ଓଲଟିଣ ଅଶାପାନ ଧରଣୀକୁ ପକେଇ ?

( ୪୪ )

ବିଦାୟର ବେଳା ଯେବେ ହୋଇ ଅସେ ନିକଟ
ସେ ପୁରର ବାଟ ପାଇଁ ପଡ଼େ ଯେବେ ଆକଟ
ମହାପ୍ରଳୟରେ ମିଶି
ଯିବା ବେଳ ହୁଏ ଆସି
ମରଣକୁ ବରିବାର ଜାଗେ କେତେ ବାସନା ?
ମିଶିବାକୁ ଧାତା ଅଙ୍ଗେ ଜାଗେ କେତେ କାମନା ?



( ୪୫ )

ଯେଉଁ କଳସୀକୁ ଚୁମ୍ବି ସୁଧା ତୁମେ ପିଅ ଗୋ
ଯେଉଁ ଅଧରକୁ ଚୁମ୍ବି ସୁଖ ତୁମେ ପାଅ ଗୋ
ସେ କଳସୀ ସେ ଅଧର
ପରିଣାମ କିବା ତା'ର ?
ଯେ ମହାଶୂନ୍ୟରୁ ସବୁ ଜନ୍ମୁଅଛି ସଂସାରେ
ଯେ ମହା ଶୂନ୍ୟରେ ସବୁ ମିଶେ ଯାଇ ଶେଷରେ
ସେହି ଯେବେ ଶେଷ ତାର
ତୁମେ ହିଁ ବିଚାର କର
ଏ ନରଶରୀର ତୁମ ଖେଳା ଅଉ କେତିକି ?
ଜନମର ଆଗୁଁ ଯାହା ଥିଲୁ, ଏବେ ସେତିକି ;
ଏ ଜୀବନ ଅନ୍ତେ ଆଉ କିବା ଭିନ୍ନ ହେବ କି ?

( ୪୬ )

ତେଣୁ କହେ କଥା ଏକ ମନେ ରଖ ସହି ଗୋ
ଜୀବନର ଅନ୍ଧକାରେ ଯେବେ ବହି ରହି ଗୋ
ତଟିନୀର ତଟ ଦେଶେ
ଦେଖି ଯେବେ ତୋତେ ଶେଷେ
ଭୋଗର ଦେବତା ଧରି ଅମୃତର କଳସୀ
ଡାକେ ତବ ପ୍ରାଣେ ସହି, ଖେଳେ ଭ ରେ ସନ୍ତୋଷି,
ଅଧରର ପାଶେ ଧରେ ସୁଧାର ସେ ଗିଲାସ,
ଫେରାଇ ଯିବୁଟି ନାହିଁ ପେଟେ ରଖି ମୁହାଁସ
ପ୍ରୀତି ଭରି ସୁଧା ପିଇ ସାଧନେରୁ ପ୍ରୟାସ ।



( ୪୭ )

ଡରିବୁ ନାହିଁ ତୋ କାଳ ପୂରିଯିବ ବୋଲି ଗୋ
ହଜିଯିବ ଚିହ୍ନ କାଳେ, ଯିବେ ବୋଲି ଭୁଲି ଗୋ
ଅନନ୍ତ ସାଗର ପରି
ବଧୀଭାର କାହିଗରି
ତୋର ମୋର ସିନା ତହିଁ ଜଳବିନ୍ଦୁ ସମ ଗୋ
କିବା କ୍ଷତି ଗଲେ ଲୁଚି ତୋର ମୋର ନାମ ଗୋ ?
ତୋର ମୋର ପରି ପୁଣି ଉପୁଜିବେ କେତେ ଗୋ
କୋଟି କୋଟି ଲକ୍ଷ ଲକ୍ଷ ପ୍ରାଣୀ ଅବିରତେ ଗୋ ।

( ୪୮ )

ତୋର ମୋର ନାମ ସହି; ଲୁଚିଗଲେ ସଂସାରୁ
ସରି କି ଯିବ ସଂସାର ; ଚଳେ ଚଳିଲେ ବିଶ୍ୱରୁ ?
ଅନନ୍ତ ଅନନ୍ତ କାଳ
ରହିବ ଏ ଧରାତଳ
ତୋର ମୋର ଜନ୍ମମୃତ୍ୟୁ କିଏ ବା ବିଚାରେ ଗୋ ?
କେତେ କେତେ ସିପ ପଡ଼ି ରହେ ସିନ୍ଧୁ ତୀରେ ଗୋ
ସାଗର କି ସେ ସବୁକୁ ଗଣ୍ଡା କେବେ କରେ ଗୋ ?



( ୪୯ )

ଏଇ ଯେ ମହା ପ୍ରଳୟ ମାଡ଼ି ଦିନେ ଆସିବ
ତୋର ମୋର ସଖ୍ୟ ଯେଉଁ ଦିନ ଲୁଚି ବସିବ ।

ଆସିବା ଆଗରୁ ସେହି
ଯେତେଣି ହେଲେ ପ୍ରାଣସହି,

ଶୁଖିଯିବା ଜୀବନର ସୁଧା ବେଳ ଥାଉଁ ଗୋ
ଆସ ଆସ ବେଗ କର, ବେଳ ଯାଉଁ ଯାଉଁ ଗୋ ।

ଗଗନରେ ଲୁଚିବାକୁ ବସିଲେଣି ତାରକା
ଅଜଣା ବାଟୋଇ ବୁଲେ ପଥ ଭୁଲି ଭୁଲିକା

ପାହିଯିବ ବିଭାବରୀ, ସରିଯିବ ତାଲିକା
କର ତ୍ୱରା, କର ବେଗ, ଉଡ଼ିଯିବ ସାରିକା ।



( ୪୦ )

ଜାଣି ଜାଣି ଜୀବନରେ ହିଳିମିଳି ହସିଲିଉ
ମିଳାଇ କି ଦିବ ସବୁ ଗୋପନ ସେ ମନ୍ତ୍ର ?

ଘର ତୃଷା, ବେଳ ନାହିଁ ;
ଦେବ ସେ ସନ୍ଧାନ କାହିଁ ?

କଳ୍ପନା ସୃଷ୍ଟି ଭେଦ ପଥ ; କାଳମୂର୍ତ୍ତି ତାର ଓଗୋ
ସତ ଠାରୁ ମିଛର ଯା ପ୍ରତିଭେଦ ବଳ୍ଗୁର ଗୋ;

ଏଥା ଯେତେବେ ସତ ସନ୍ଧ
ବଳ୍ଗୁର ସୌଭେଦ ଭଙ୍ଗ

ସତ କି ମିଛ ସଂସାରେ ନଶ୍ୱର ଏ ଜୀବନ ;
ବାଳମୂର୍ତ୍ତି ଭେଦ ଏଥି ଜୋନେ କିଏ ଘଟନ ?



( ୫୧ )

ବାଳ ସୂକ୍ଷ୍ମ ଭେଦ ହେବ ସତ ମିଛ ଭିତରେ
ସତ୍ୟରୁ ଟି ଚୋରେ ସହି, ଭଲ୍ଲ ସ୍ଥିତ ସତରେ
ଜଣା ଯେବେ ଥାନ୍ତା ତୋରେ
ସିଦ୍ଧ ଏ ଦୁଇ ମଧ୍ୟରେ
ଧର ଧର ଖୁଲ ଖୁଲ ପାରନ୍ତୁ କି ଯାଇ ତୋ
ବ୍ରହ୍ମାଣ୍ଡର ଗନ୍ତାଘର ଭିତରକୁ ସହି ତୋ ?
ବିଧାତାର ରୁଚିଲେ ଭେଟି ପାରନ୍ତା କି ହୋଇ ଗୋ ?

( ୫୨ )

ଏ ସୃଷ୍ଟିର ଅସ୍ଥି ସନ୍ଧି, ଯେତେ ଶିରା ପ୍ରଶିରା
କାହାର ଗୋପନ ହାତ ଚାଳେ ତହିଁ ମନ୍ଦାକ୍ଷ ?
ପାରଦ ପରିଏ ମିଶି
ହୃଦରେ ମୋ ବେଦନା ରାଶି
କାହିଁଠାରୁ ଶଶୀ ଯାଏ ବହୁରୂପେ ଝଲସି
ଏ ସବୁ ଯେତେକ ରୂପ ଥାଏ ଭବେ ବିକଶି
ଦିନେ ସବୁ ଭାଙ୍ଗି ଗୋ ଯିବ ସିନା ପ୍ରେୟସି ?
“ସେ” ଏକା ରହିବେ କାଳ କାଳ ପାଇଁ ପ୍ରକାଶି ।



( ୫୩ )

ସନାତନ ପିନା; ସେ ଯେ ଚିର ଅଗୋଚର ଗୋ
ଅନୁମାନଗମ୍ୟ କେବେ ଷଣେକ ମାତର ଗୋ

ପୁଣି ପରକ୍ଷଣେ ଯେହ୍ନି
ଅନ୍ଧାରେ ଲୁଚନ୍ତି ରହି

ଏ ସଂସାର ପରଦାରେ ଲୀଳା ଖେଳା ବାହ୍ମାରେ
ଅନ୍ଧକାର ଗ୍ରାସିବେ ଏ ସଂସାର ତହାରେ ।

ଯେତେ ଯେତେ ଲୀଳା ଏଥି, ସବୁର ସେ କରତା
ଅନନ୍ତ କାଳର ଏଯେ କଉତୁକ ବାରତା
ଏ ସବୁର ରଚୟିତା ଅଛନ୍ତି ସେହିଁ ଗୋ
ପୁଣି ଏ ନାଟକେ ନଟ ସେହ୍ନି ପିନା ସହି ଗୋ
ବସି ବସି ଦେଖୁଥାନ୍ତି ସବୁ ଦୂରେ ରହି ଗୋ ।



( ୫୪ )

ତେବେ ସହି ଅଜି ଯେବେ ଏ ଜୀବନ ଥାଉଁ ଗୋ
ଈଶ୍ୱର ନିର୍ମମ ବୁକୁ ଅନାଇ ତୁ ରହୁ ଗୋ
ମିଛେ ମିଛେ ଆଶା ଧରି
ଜଡ଼ି ସ୍ନେହ ଝୁରି ଝୁରି
ସରଗର ରୁଦ୍ଧଦ୍ୱାର ଚାହିଁ ରହୁ ନିଃଶେ
ଫିଟିବ ବୋଲି ଏ ଅବା ଚାହିଁ ରହୁ ହତାଶେ;
ତେବେ ସହି କି ଭାବିବୁ ବେଳ ଗଲେ ବିତି ଗୋ
ଅସ୍ତ ଯାଇ କାଲି ହେବ ପାଇଗଲେ ରାତି ଗୋ
ତେଜିନେ ଜୀବନ ଛୁଟି ଜଡ ହେଲେ ମତି ଗୋ ?

( ୫୫ )

ତେଣୁ କହେ ସହି ତେଜି ମନୁଁ ସବୁ ବେଦନା
ପାରିବ ନିସର୍ଗ ଭେଦ ଭାଳି ଝୁରି ମର ନା
କାଲିର ଚିନ୍ତାକୁ ସହି
ଫିଙ୍ଗି ଦିଅ କାଲି ପାଇଁ
ବୁଡ଼ାଇ ଦିଅ ଅଙ୍ଗୁଳି ସୁଧା କଳସୀରେ ଗୋ
ବେଳ ଥାଉଁ ଭୋଗ ଲିପ୍ସା ସାର୍ଥ କର ବାରେ ଗୋ
ଯେ ମୁହୂର୍ତ୍ତ ଯାଏ ଚାଲି, ସେ କି ଆଉ ଫେରେ ଗୋ ?



( ୫୭ )

ଏ ମୁହୂର୍ତ୍ତ କେବେ ସଖି, ନ କରିବୁ ବୃଥା ଗୋ
ନ ଭାଳିବୁ ଏଣୁ ତେଣୁ ହାନି ଲାଭ କଥା ଗୋ
ଏ କାମ ସେ କାମ ଭାଳି
ନ କରିବୁ କାଳି, ଅଳି;
ରସାଳ ସେବନେ କର ଚିତ୍ତ ବିନୋଦନ ଗୋ
ନିମ୍ବ ଫଳ ଲୁଖି ବୃଥା ନ କରିବୁ ଦାନ ଗୋ
ନିଷ୍ଫଳ ନ ହୁଅ ତେଜି ଫଳ ଅସ୍ୱାଦନ ଗୋ

( ୫୭ )

ତେଣୁ ସଖି, ସବୁ ତେଜି ଲୋଡ଼ିଲି ମୁଁ ବସି ଗୋ
ଜୀବନର ସଙ୍ଗୀରୂପେ ସୁରାର କଳସୀ ଗୋ
ଉଦ୍ଦାମ ବିଳାସ ସ୍ରୋତ
ଲୋଡ଼ିଲି ମୁଁ ଅବିରତ;
ବିବେକ ବିଘ୍ନର ସବୁ ତଡ଼ିଦେଲି ଦୂରେ ଗୋ
ପ୍ରେମର ଅପୂର୍ବ ସ୍ରୋତ ଲୋଡ଼ିଲି ଅନ୍ତରେ ଗୋ ।







( ୫୮ )

'ସତ' 'ମିଛ' ଭେଦ ସବୁ ବୁଝିଛି ମୁଁ ସହି ଗୋ
'ସୁଖ' 'ଦୁଃଖ' ଭେଦ ଯେତେ ଜାଣେ ରହି ରହି ଗୋ
ମାନବ ଶୋଚନା ମୋର
ନ ଥାଏ ଏଥିରେ ଗର
ପ୍ରାଣପଣେ ଲୋଡ଼େ ମୁହିଁ ବାସନାର ବିକାଶ
ଉଦ୍ଦାମ ଯୌବନ ସୁଖ, ଦ ଦନିଆ ବିଳାସ

( ୫୯ )

ଉଲଟେ ଏ ବୁଝାମଣା ବୋଲି ଲୋକେ କହିବେ
ବିଚାରିଲେ ସତ ବୋଲି ଦିନେ କିନ୍ତୁ ଜାଣିବେ
ମଣିଷ ଜୀବନ ପାଇଁ
ଅସଲ ବିଚାର ଏହି
ଯେ ମଲା ସେ ଗଲା; ଗଲା କାଲି କଥା ମଲାଣି
ଅସନ୍ତା କାଲିର କଥା କିସ ହେବ କେଜାଣି;
କାଲି କଥା ତେଜି ଭଲା ଆଜି କଥା ସଜନି !





( ୭୦ )

ଏବେ ତ ମନ୍ଦିର କୋଣୁଁ ଏ ଗୋଧୂଳି ଲଗନେ
ଦେବତାଏ ଅଂସ ଦେଖ, ହସ ହସ ବଦନେ
କାନ୍ଧେ ତାର କଳସୀଏ
ଅକ୍ଷି ମୋ ଢଳିପି ଯାଏ ;
ଚଖିବାକୁ ଦେଲା ମୋରେ ସେ କଳସୀ ରସ ଗୋ !
ଦ୍ରାକ୍ଷାରସ ! ଚଖି ମୋର ପ୍ରାଣ ହେଲା ତୋଷ ଗୋ ।

( ୭୧ )

ଏଇ ସୁଧା ସଜନି ଗୋ, ନିଜଗତେ ସାରଥି
ଅତ ଯେତେ ମତ, ସବୁ ମୂଳ ବିବାଦରଥି
ଏ ମୋହିନୀ ସୁଧା ପିଇ
ଭୁଲ୍ ଧର୍ମ ଧନ୍ଦା, ଭାଇ,
ବିଧାତାର ସର୍ଜନା ଏ ମହାସ୍ପର୍ଶ ମଣିଟି
ଲୁହାର ଜୀବନ ତାକୁ ଛୁଇଁ ଦେଲା କ୍ଷଣିଟି
ପାଲଟଇ ଖାଣ୍ଟି ସୁନା, ଥାଅ ସଖି ଜାଣିଟି ।



( ୭୨ )

ସର୍ବଶକ୍ତିମନ୍ତ ସହି, ବିଧାତା ଏ ମରତେ
ଯେତେ ଦୁଃଖ ଭୟ ପ୍ରାଣେ ବ୍ୟଥା ଦେଇ ନିରତେ
ତାଙ୍କର ପ୍ରଚଣ୍ଡ ଅସି
ଆଘାତେ ପଳାନ୍ତି ଭାସି
ହେଲେ ଯାଏ ଅବିଶ୍ୱାସ ସବୁ ଯାଏ ଦୂରେ ଗୋ
ଜ୍ଞାନର ଆଧାର ସେତ ; ସବୁରି ଉପରେ ଗୋ ।

( ୭୩ )

ଏ ମଧୁର ରସ ସେଇ ବିଧାତାର ଦାନ ଗୋ
ଦ୍ରାକ୍ଷାଲତା ସବୁ ଯିନା ତାଙ୍କର ସୃଜନ ଗୋ
କୋମଳ ସେ ଲତାଗୁଚ୍ଛି
ରସ ତାର ଅତି ସ୍ୱଚ୍ଛ
କେ ନିନ୍ଦବ ଅବା ସହି, ମାଦକତା ତାର ଗୋ ?
ବିଧି,ତାର ଦାନ ସେ ଯେ ; ବିଳାସ ନରର ଗୋ
ମନ ଖୋଲି ଭବେ ତାର ଆସ୍ୱାଦନ କର ,ଗୋ
ମଣିବୁ ନାହିଁଟି ତ୍ରୁଟି ମଦ ବୋଲି ତାରେ ଗୋ
ମଦ ହେଲେ ତୃଷ୍ଟି ତାର କାହିଁ ଧରଣୀରେ ଗୋ ?

( ୬୪ )

ମୋ ଜୀବନ ସଞ୍ଜୀବନୀ ଏଇ ସୁଧାରସ ଗୋ
ଭେଜିବି ଧନେ ମୁଁ ତାକୁ ଭେଜିବି ଅବଶ୍ୟ ଗୋ
ପରକାଳ ଭୟେ ଅବା
ଭେଜିବି ତାକୁ କଦବା ;
କି ଅବା ସୁରଗ ସୁଧା ଆଶେ ଲୋଭ କରି ଗୋ
ଭେଜିବି ସେ ଧନ ସିନା କହୁଚି ବନ୍ଧୁ ଗୋ
ଯେ ଧନ ଧୂଳିରେ ମିଶି ଯିବ ଅପସରି ଗୋ ।

( ୬୫ )

ସରଗ ବୋଲି ଯାହାକୁ ଯୋଗୀଋଷି କହନ୍ତି
ତହିଁ ଯଦି ନଥିବ ଗୋ, ଦ୍ରାକ୍ଷାଲତା ଫଳନ୍ତି
ପ୍ରେମଭକ୍ତି ସଙ୍ଗୀତର
ନଥିବ ଯେବେ ଝଙ୍କାର,
ସରଗ ବୋଲି ତାହାକୁ କହି କିସ ହେବ ଗୋ ?
ଯୋଗୀ ଋଷି ଛଡ଼ା ଆଉ କିଏ ତହିଁ ଥିବ ଗୋ ?
ଫାଙ୍କା ଫାଙ୍କା ସବୁ ତାର; କିଏ କିଆଁ ଯିବ ଗୋ ?







( ୬୬ )

ପରକାଳ ଭୟ ହେତୁ ସତ କି ଅସତ ଗୋ
ସରଗର ଆଶା ହେତୁ ହିତ କି ଅହିତ ଗୋ
ଖାଣ୍ଟି କଥା ଏକ ସାର
ଏ ଜୀବନ ନୁହେଁ ଚିର;
ଏଇ କଥା ପଦ ସାର ଆଉ ସବୁ ତୁଚ୍ଛ ଗୋ
ଫୁଟିଲ୍ ଫୁଲ୍ ତ ଝଡ଼ିପଡ଼େ, ଏକି ମିଛ ଗୋ ?

( ୬୭ )

ନୁହେଁ କି ଅଦ୍ଭୁତ ଏହା ବିଶ୍ୱର ଦ୍ୱାରେ ଗୋ
ଲକ୍ଷ ଲକ୍ଷ ପ୍ରାଣୀ ନିତ ମରନ୍ତି ସଂସାରେ ଗୋ ;
ଏ ସଂସାର ଅନ୍ଧକାରୁଁ
ତରନ୍ତି ସେ ମରୁ ମରୁ;
ଜଣେ ତ ଫେରିଜଠି ନ ତହୁଁ ନ ଆସଇ କେବେ ଗୋ
କହିବାକୁ ଆରପୁର ବାରତାକୁ ଲଭେବ ଗୋ ;
କେମନ୍ତେ ସେ ବାଟ ତାହା କେ ଜାଣଇ କେଢ଼ିବ ଗୋ ?
ଜାଣିଲେ ଲୋଡ଼ନ୍ତେ ସିନା ଯିବାକୁ ସରବେ ଗୋ ।





( ୭୮ )

ଯେତେ ଯୋଗୀ ରୁଚି 'ତାଙ୍କ' ଲଭନ୍ତି ଦର୍ଶନ ଗୋ
କହୁଥାନ୍ତି ଲଭିଲେଣି ସେ ଗୁପତ ଜ୍ଞାନ ଗୋ
ସବୁ ମିଛ କଳପନା
ସପନ କାହାଣୀ ସିନା ;
ନିଦରୁ ଜାଗି କହନ୍ତି ସଂସାରକୁ ଭୁଲାଇ ;
ପୁଣି ତ ଗଭୀର ନିଦ୍ରା ମାଡ଼ି ତାଙ୍କୁ ବସଇ ।

( ୭୯ )

ଏ ମୋର ଅନନ୍ତ ଆତ୍ମା ସତେ ଯେବେ ସଜନି,
ମାଟିଘଟ ତେଜି ଦିନେ ଯିବ ଛାଡ଼ି ଅବନୀ,
ଅନନ୍ତ ଆକାଶେ ଯେବେ
ଉଡ଼ିବ ଉନ୍ମୁକ୍ତ ଭାବେ
ତେବେ ସେ କେମନ୍ତେ ସହି, ଏତେଦିନ ଧରି ଗୋ
ଏ ମାଟି ଶରୀରେ ରହେ ଚିରବନ୍ଦୀ ପରି ଗୋ ?
ଏ କି ଅଘଟନ କଥା, ପାରୁକି ବିରୁଚି ଗୋ ?







( ୭୦ )

ମାଟିଘଟ ନୁହେଁ, ଏ ତ ମାଟିଘଟ ନୁହେଁ ଗୋ
ଓମ୍ବୁଏ ପଡ଼ିଛନ୍ତି ଏଥି; ରାଜା ଯେ ଯେ ରହେ ଗୋ
ଯେଉଁ ପୁରକୁ ଯିବା ପାଇଁ
ବେଳ ଯେବେ ଯାଏ ହୋଇ
ଭୁଲିଯାଏ ନୃପବର; ଓମ୍ବୁ ରହେ ପଡ଼ି ଗୋ
କାଳର ଭଙ୍ଗି ଦେଖ ମର ତନୁ ପଡ଼େନ୍ତି ହୁଡ଼ି ଗୋ
ଆଉ ଜଣେ ରାଜା ପୁଣି ବସେ ଗାଦି ମାଡ଼ି ଗୋ ।

( ୭୧ )

ଦିନେ ମୁଁ ପେଷିଲି ମୋର ଆତ୍ମା ପୁରୁଷଙ୍କୁ ଗୋ
ଅଜଣା ରାଇଜେ ଉଡ଼ି ବୁଲି ଦେଖିବାକୁ ଗୋ ;
ଜୀବନର ପରପାରେ
କିବା ଲେଖା ଥାଇପାରେ
ପଢ଼ିବାକୁ ତହୁଁ ପଢ଼େ ଦୁଇପଦ ମନ୍ତ୍ର ଗୋ
କେତେକାଳ ରହି ତହୁଁ ଫେରି ମୋ ପାଖର ଗୋ
ତାହାଙ୍କୁ ସେ "ଦେଖ ମୋରେ ବାରେ ନେଇ ଫେରନ୍ତି
ମୁହିଁଟି ନରକ; ପୁଣି ସ୍ୱର୍ଗପୁର ମୁହିଁଟି" ।





( ୭୨ )

ସରଗ ସେ—ବିଳାସର ପୂର୍ଣ୍ଣ ଅନୁଭୂତି ଗୋ
ନରକ ସେ—ବେଦନାର ଛବି ମୂର୍ତ୍ତିମତୀ ଗୋ
ଅନ୍ଧକାରେ ପଡ଼ିରହି
ଏ ଜୀବନ ଭୋଗେ, ସହି,
ଏଥୁଁ ଉତ୍ତୁରି ପାରିଲେ ଦେଖ ଆଉ କାହିଁ ଗୋ ?
ଏ ଜୀବନ କ୍ଷଣସ୍ଥାୟୀ ; ଗଲେ ନ ଫେରଇ ଗୋ ।

( ୭୩ )

ଏ ସଂସାରେ ଅମେ ସବୁ ସପନର କୁଣ୍ଢାଇ
ନିଶା ଅନ୍ଧକାରେ ଘୁରୁଁ ସୁଖଦୁଃଖ ମୁଣ୍ଡାଇ
ଯାହାର ଇଙ୍ଗିତେ ସହି,
ଏ ତାମସୀ ତଳେ ରହି;
ସେହି ତ ଅଛନ୍ତି ଦୂରେ ମହାଦୀପ ଧରି ଗୋ
ତାଙ୍କରି ଚୌଦିଗେ ଅମେ ମରୁଁ ସିନା ଘୂରି ଗୋ।







( ୭୪ )

ଏ ବିଶାଳ ପଶାଖେଳେ ଖେଳାଳୀ ତ ସେହି ଗୋ
ଅନେ ଘିନା ପଶାଗୋଟି; ପ୍ରାଣ ଅନ୍ଧ କାହିଁ ଗୋ ?

ଅମଙ୍କୁ ଚାଳନ୍ତି ସେହି
ଛଡନି; ଏଗର; କାହ୍ନି

ବିଶାଳ ଏ ପଶାପାଲି ଉପରେ ଦସାଇ ଗୋ
ଦିନ ଅଉ ରାତି କୋଟି କହାଥାଏ ତହିଁ ଗୋ

ଯାତେ ସଂଘତେ ଚାଳନ୍ତି ସେ; ଯୁଗବାନ୍ଧି କାହିଁ ଗୋ;
କାହିଁ ପାଲି ଉଠିଯାଏ; ମାତହୁଏ ରହି ଗୋ,

କେବେ ଅବା ଏକ ଗୋଟି ଆନକୁ ମାରଇ ଗୋ
ତୁଣି ଖେଳ ଶେଷେ ସବୁ ପାଲିରେ ପୁରାଇ ଗୋ,
ଠଣା ଘରେ ଦାନ୍ତି ରଖି; ପଡା ରହେ ନାହିଁ ଗୋ।





( ୭୫ )

ଯୁକ୍ତିହୀନ ଗୋଟି କିବା କଥା କହି ପାରେ ଗୋ ?
'ଅସ୍ତି' 'ନାସ୍ତି' ଛଡ଼ିବା ତା'ଶକତ ବାହାରେ ଗୋ,
ଯେମନ୍ତେ ଗୁଲନ୍ତି ଯେହ୍ନ,
ତେମନ୍ତେ ଏ ଚଟିଲ ରହି,
କେତେବେ ବାଟେ ଡାହାଣେ ବା ଗୁଲନ୍ତି ବୁଲାଇ ଗୋ
"ସେହ୍ନ" ସେ ଜାଣନ୍ତି କାଠର ଗୁଲନ୍ତି କିପାଇଁ ଗୋ
"ସେହ୍ନ" ସେ ଜାଣନ୍ତି ପ୍ରିୟା, ଜାଣନ୍ତି ଟି "ସେହ୍ନ" ଗୋ
ତାଙ୍କ ବିନା କିଛୁ ଅଉ ନ ଜାଣଇଁ କେହି ଗୋ ।

( ୭୬ )

ତାଙ୍କରି ଅଦୃଶ୍ୟମାନ ଅଙ୍ଗୁଳିର ଗାର ଗୋ
ଲେଖିଦିଏ ଧରଣୀର ଭବିଷ୍ୟ ବେଭାର ଗୋ
ଲେଖେ ଚିରକାଳ ପାଇଁ
ଦିଏଣ୍ଡେ ଥରେ ରହେ ନାହିଁ,
ଟୋଟିଏ ଅକ୍ଷର ତହୁଁ ଲିଭାଇ କେ ପାରେ ଗୋ ?
ଯେତେ ବୁଦ୍ଧି, ଯେତେ ପୁଣ୍ୟ, ଆଉ ଯାହା ଠାବେ ଗୋ
କାହା ଲାଗି ସେ ଲିଖନ ନଖଣ୍ଡିବ ବାରେ ଗୋ
କାନ୍ଦି କାନ୍ଦି ମଲେ ଶୁଦ୍ଧା ମାତ୍ରାଏ ତହିଁରୁ ଗୋ
ନ ଲିଭିବ ଫୁଟେ ଫୁଟେ, ଦୁବ ହେଲେ ବାରୁ ଗୋ ।



( ୭୭ )

ଯେତେ ମୁନି ଜ୍ଞାନୀ ଯେତେ ବଖାଣନ୍ତି ଜ୍ଞାନ ଗୋ
ଯେତେ ଯେ ସାଧନ୍ତି ଯୋଗ ଅସାଧ୍ୟ ସାଧନ ଗୋ
ଅନନ୍ତ ଏ କାଳ ସ୍ରୋତେ
ସ୍ଥାନ ତାଙ୍କ ଅବା କେତେ ?
ଏ ମନ୍ତ୍ରା ତୃଷ୍ଣଙ୍କେ ସିନା କଣ୍ଠାଙ୍କରେ ଘଟା ଗୋ
ଏଥୁଁ ହେବା ଉପାୟୁ କାରେ ନାହିଁ ଜଣା ଗୋ !
ସମସ୍ତଙ୍କୁ ଦେଇଦିଏ ଏ ସଂସାର ଘଟା ଗୋ !

( ୭୮ )

ଏଇ ଯେ ଅକାଶ ସନ୍ଧି ଦେଖୁଛି ଜଗତରେ ଗୋ
ଲେଉଟି ଚେଲଣିପର ଘଟଣ ନିରନ୍ତରେ ଗୋ
ତାହାଭିତରେ ସିନାରହି
କାଟୁଁ ଦିନ ଆମେ, ସନ୍ଧି,
ଜୀବନ ମରଣ ସବୁ ଘଟେ ତଳେ ଆର ରେଗୋ
ସେ କି ଲଗୁ ଯାତର କର କଷଣ ଅନ୍ତର ଗୋ ?
ଜାଣିଛି ପଶୁଏ ସଖି ! ସେ ମଧ୍ୟ ନାହୁର ଗୋ
ଜଡ଼ି ପରି କାଳସ୍ରୋତେ ଚଡ଼େ ନିରନ୍ତର ଗୋ !



( ୭୪ )

ଧରଣୀର ସୃଷ୍ଟି ଦିନ ପହିଲି ଯେ ମାଟି ଗୋ
ତାକୁ ଦଳାଦଳି କଲେ ନରରୂପ ସୃଷ୍ଟି ଗୋ .

ସୃଷ୍ଟିର ପହିଲି ଦିନ
କରି ରଖିଲେ ସୃଜନ

ସୃଷ୍ଟି ଶେଷଦିନ ପାଇଁ ଲେଖା ଯେତେ ପ୍ରାଣୀ ଗୋ
ପହିଲି ମାଟିରେ ଶେଷ ଗ୍ରନ୍ଥି ଦେଲେ ଟାଣି ଗୋ

ସୃଷ୍ଟି ଶେଷଦିନେ ଧରା ବୁକେ ଯାହା ଫଳିବ
ମଣ୍ଡି ତାର ଆଦ୍ୟଦିନେ ବୁଣା ହେଲା, ଜାଣିବ

ସୃଷ୍ଟିର ପହିଲି ଉଷା!
ଚୁକଟେ ନୋହୁ ଗୋ ଯୋଷା,

ଲିପିବଦ୍ଧ ହେଲା ଶେଷଦିନ ଯାହା ଘଟିବ
ପ୍ରଳୟ କାଳର ଯେତେ ଲୀଳା ଯେତେ ତାଣ୍ଡବ ।







( ୮୦ )

ଓଜର ଯେ ମତୁଆଳ ଖେଳ ମଚାଇବ ଗୋ
କାଲିଠାରୁ କଲପନା ହୋଇଛି ତା ଧ୍ରୁବ ଗୋ

କାଲି ହେବ ଯେତେ କଥା
ମଙ୍ଗଳ, ବିଜୟ, ବ୍ୟଥା

ସବୁ ଆଗୁଁ ଧରିବନ୍ଧା ହୋଇଛି ଗୋ ସଜଡ଼ା
ବେଳ ଥାଉଁ ଥାଉଁ ସଖି, ସାର ସବୁ ଆଖଡ଼ା

ଓଜର ବିଳାସ ଖେଳା ନ ଭୁଲିବୁ ସହି ଗୋ
କାହୁଁ ତୁ ଆସିଚୁ, କେଉଣେ ଯିବୁ, ଜଣା ନାହିଁ ଗୋ

ଯେତେ ଭୋଗ ଯାଅ କର
ଜଣା ତ ନାହିଁ କାହାର

ଏ ଜୀବନ ଗଲେ ବିତ କେଉଣି ଯିବୁ ଚୁଲି ଗୋ.
କାହିଁକି ହାରିବୁ ସହି ଏ ଜୀବନ ଖାଲି ଗୋ ?





( ୮୧ )

ସତ କଥା ପଦେ ସହି, ଦଏ କହୁ ତୋତେ ଗୋ
ସୃଷ୍ଟିର ପ୍ରଥମ କିସ୍ତା ଜାଗନ୍ତେ ଜଗତେ ଗୋ
ଜ୍ୱଳନ୍ତ ଏ ନଭୋ ଦେଶେ
ଅନନ୍ତ ପ୍ରଭା ବିକାଶେ
ମାଙ୍ଗିହେଲେ ଯେବେ ଗ୍ରହ ତାରକା ଭାସ୍କର ଗୋ
ସେତିକ୍କୁ ବେଳୁଁ ସଜନି, ସଙ୍ଗ ହେଲୁ ମୋର ଗୋ
ମେଣ୍ଟାଏ ଅଗରୁ ସଞ୍ଚା ମାଟିର ଶରୀର ଗୋ
ନିବାସିଛିଲ ଯେ ମୋର ଅସ୍ଥି ପୁଟୁଷିର ଗୋ

( ୮୨ )

ସେତିକି ବେଳୁଁ ସଜନି, ଏ ଦ୍ରାକ୍ଷା ଲତିକା ଗୋ
ଟେଢ଼ା ତ ହୋଇ ଅସିଚି ମୋ ପ୍ରାଣ ନାଟିକା ଗୋ
ମୋର ଜୀବନକୁ ସହୁ
ଜଡ଼ାଇ ରଖିଛି ସେହୁ
ହୃସନ୍ତୁ ପଚେଛ ତଣ୍ଡିରେ ଏ ମୋ ମୂର୍ଚ୍ଛ ନୀତିକା
ଏ ମାଟି ଶରୀରେ ମୋର କାରେ କିଅଁ ଭ୍ରାନ୍ତି କା ?
ଅସିଚି ତ ଗନ୍ତାଧର ଗୁଣ ମୋର କଢ଼ିକା ।
ଏଇ ଗୁଣ ଯୋଗେ ସେଇ ଦ୍ୱାର ଯିଦ୍ର ଫିଟି ଗୋ
ବାହାରେ ରହି ପଣ୍ଡିତେ କରୁଥାନ୍ତି ଘାଟି ଗୋ

( ୮୩ )

ଜାଣିଛି ଏତିକି ସହି, ଜାଣିଛି ଏତିକି ଗୋ
ଏଇ ଯେ ହୃଦୟ ମୋର ଉଜଡ଼ିଲା ମଉକି ଗୋ

ତାହାରି ପରଶ ପାଇ
କୃତାର୍ଥ ହୋଇବ ମୁହିଁ,

ଗଲା ତାର ହେବ କିସ ନ ଭାଳିଲି ତଳେ ଗୋ ।
ବନ୍ଧୁ ପ୍ରେମ ଲଭିବି କି ଏ ହୃଦୟ ବଳେ ଗୋ
କଦା ଯିବି ଜଳି ତାଠି ଜ୍ୱଳନ୍ତ ଅନଳେ ଗୋ ।

ଗୋଟିଏ ଝଲକ ତାର
ପାଇଲେ କୃତାର୍ଥ ନର୍

ମନର ଜହ୍ନି ମଧ୍ୟେ ମିଶିଗଲେ କି ହେବ ?
ଘିନତାର ପଛ ଅନ୍ଧୁ ଆଲୋକ କି ହରିବ ?



( ୮୪ )

ଏମନ୍ତ ଅଶ୍ଚର୍ଯ୍ୟ କଥା କେ ଶୁଣିବ କିଆଁ ଗୋ ?
ଏ ସଂସାର ମାୟା; ତାର ନାହିଁ ମୂଳଚୂଆ ଗୋ

ଏ ବୃଥା ମାୟାର ଖେଳା
ବିଶ୍ୱ କରତାର ଲୀଳା

ଭବ ଚକ୍ର ଯାକୁ କିଆଁ ଅର୍ଥମୟ୍ କରିବ ?
ଅର୍ଥମୟ କରି ପୁଣି, ଏ ଶୃଙ୍ଖଳେ ଭରିବ ?

ଏ ଶୃଙ୍ଖଳ ଭଲେ ପୁଣି ପେଡ଼ ହୋଇ ମରିବ ?
ପେଡ଼ ହୋଇଥିଲେ ମଧ ସୁଖ ତହୁଁ ମଣିବ ?

ବିଧାତା ଗଢ଼ି ଚ ଯେବେ ସତେ ଏ ଶୃଙ୍ଖଳ ଗୋ
କାହାବଲେ ସୁଧାମୟ ମଣିବ ତା ଫଳ ଗୋ ?

ଛିଣ୍ଡାଇଲେ ଏ ବନ୍ଧନ
ଭଲେ ନୋହି ସାବଧାନ,

ଯୁଗ ଯୁଗ ଧରି ଖାଲି ନରକରେ ଘୁରିବ ?
ଅଦ୍ଭୁତ ଏ କଳପନା କିଏ କିଆଁ କରିବ ?



( ୮୫ )

ଏକି ଅଦ୍ଭୁତ କଥା, କାହିଁ ନାହିଁ ଶକ୍ତି ଗୋ
ମାଟିର ଏ ଘଟ, ଏତ ଯୁଗେ ଯୁଗେ ଘଟା ଗୋ

ଏ ମାଟି ଶରୀର ଦେଇ
ଖାଣ୍ଟି ସୁନା ମିଳେ କାହିଁ ?

ଖାଦଭରା ନିରାଶ୍ରୟ ଏ ଜୀବନ ମୂଲେ ଗୋ
ହସିବେ ନାହିଁ କି ଲୋକେ ସୁନା କିଣି ଗଲେ ଗୋ ?

ଏ ମାଟି ଶରୀର ପରା ବିଧାତାର ଦାନ ଗୋ !
ତୁଚ୍ଛା ମାଟି, ତୁଚ୍ଛା ଖାଦ; ତୁଚ୍ଛା ମୂଲ୍ୟହୀନ ଗୋ

ଏହାର ବଦଳେ ପୁଣି
ଲୋଡ଼ିବା ସୁବର୍ଣ୍ଣ କିଣି ?

ଏକି ନୀତି ? ଏକି ସହ ମନକୁ ଆସଇ ଗୋ ?
ନ ଦେଇ ରତ୍ନକୁ ଲୋଡ଼ େଶୁଝିବାର ପାଇଁ ଗୋ

ପ୍ରମାଣ ତ ଯୋଗାଇବା ସହଜ ନୁହଇ ଗୋ !
ଏମନ୍ତ ବେପାର କାହିଁ ଜଣା ଶୁଣା ନାହିଁ ଗୋ



( ୮୬ )

ବିଧାତାର ଅଭିଶାପ ଭୟେ କି ସଜନି ଗୋ
ଅନ୍ୟାୟକୁ ଧନ "ଭାଙ୍ଗ" ବୋଲି ପିବ ମାନି ଗୋ ?
ତା ହେଲେ ଏ ଧରାତଳେ
ସାଧୁ ସନ୍ଥ ଜନ ମେଳେ
ନୋହିବ କି କା ପୁରୁଷ ତଳେ ମୁହିଁ ହୀନା ଗୋ ?
ଜାଣୁ ଜାଣୁ ସତେ ହଠେ ହେବି କି ଅଜଣା ଗୋ ?

( ୮୭ )

ବିଶ୍ବର ଯେ ନିୟାମକ ସେକି ଜାଣି ଜାଣି ଗୋ
ବାଟେ ମୋର କଣ୍ଟା ଗଛ ରୋପି ଛନ୍ତି ଆଣି ଗୋ ?
ଯେ ପଥେ ଭ୍ରମିବି ମୁହିଁ
ସେପଥେ ସତେକି ବହ୍ନି
ବିଘ୍ନର ଟାହାଳି ଦେବେ ଟେକି ଅଳସିତେ ଗୋ ?
ପାପର ସଞ୍ଚୟ ମାଳା ତୋଳି ଅଯାଚିତେ ଗୋ
ଟାଣି ନେବେ ବୋଲି ମୋତେ ନରକର ପଥେ ଗୋ
ବେଢ଼ିବାକୁ ମୋ ଜୀବନ ଗତି ଅବିରତେ ଗୋ ?



( ୮୮ )

ହେ ପ୍ରଭୁ ! ବିଶ୍ୱ କରତା ତୁମରି ଇଙ୍ଗିତେ
ମାଟିର ଗଢ଼ରେ ନର ଜନମେ ମରତେ,

ତୁମରି ଇଙ୍ଗିତ ହେତୁ
ଜନମେ ମାନବ ଜାତି;

ତୁମରି ଇଙ୍ଗିତେ ପିନା ନନ୍ଦନ କାନନେ
ବିଷଧର ସର୍ପ ପୁଣି ଉପୁଜଇ ଦଶନେ ।

ଯେତେ ଯେତେ ପାପେ ପ୍ରଭୁ, ନରର ଏ ମୁଖ
କଳଙ୍କିତ କରିଛ ହେ ଶିଟଣ୍ଡବିଶିଖ !

ସେଥିପାଇଁ ଆଜି ପ୍ରଭୁ ! ଏ ମାନବ ଜାତି
ଅରପେ ଶ୍ରୀପଦେ କ୍ଷମା; ଦେନ ବିଶ୍ୱପତି !
ପ୍ରତିଦାନେ କ୍ଷମା ତାରେ ଦିଅ ପ୍ରଭୁ ହେତୁ ।

× × ×



( ୮୯ )

ଦୀର୍ଘ ଉପବାସ ପରେ ଦିନେ ଗୋ ମିତଣି,
ଅସ୍ତାଚଳେ ଯାଉଥିଲେ ଯେବେ ଦିନମଣି,
କ୍ଷୁଧା ବ୍ୟଥିତ ଅନ୍ତରେ
ଭ୍ରମି ଭ୍ରମି ବହୁଦୂରେ
କୁମ୍ଭାର ଶାଳରେ ପୁଣି ପହଞ୍ଚିଲି ଯାଇ ଗୋ
ମାଟିର ଅଶେଷ ଘଟ ଥୁଆ ଥିଲା ତହିଁ ଗୋ

( ୯୦ )

ଧୀରେ ଧୀରେ ମାଟିଘଟ ହେଲେ କୁହା କୁହି ଗୋ
ଶୁଣିଲି କି ନ ଶୁଣିଲି କାନେ କଥା ତାଙ୍କ ସହି ଗୋ
ବହୁଦିନୁଁ ଭସ୍ମୀଭୂତ
ଜୀବ କା’ ହୋଇ ଜାଗ୍ରତ
କହିଲା କି ପାଉଁଶର ଆବରଣ ଫେଇ ଗୋ ?
କାନେ ମୋର ବାଜି ଭାଷା ପାଲଟିଲା ତହିଁ ଗୋ ?



( ୯୧ )

ଘଟେ ଏକ ବାହ୍ମାରଣ କହିଦେଲା ହସି ଗୋ
" ତୁଚ୍ଛା ମାଟିରେ ଏ ଘଟ ଯେ ଗଢ଼ିଲା ବସି ଗୋ
" ଅକାରଣେ କିଆଁ ଭଲା
" ଏ ସୁନ୍ଦର ବପୁ ଦେଲା ?
" ଦେଲା ଯେବେ ପୁଣି କିଆଁ କଲା ଏ ବିଧାନ ଗୋ
" ଭାଙ୍ଗିଗଲେ ମାଟି ଗୁଳେ ଯିବାକୁ ସମାନ ଗୋ ?"

( ୯୨ )

ଆଉରେକ କହିଲା ତହୁଁ, " ଏ ନୁହେଁ ସମ୍ଭବ ଗୋ
" ଯେ ଘଟେ ଅମୃତମୟ ସୁଧାରସ ଥିବ ଗୋ
" କର ଆସ୍ୱାଦନ ତାରେ
" କେ ବା ଘଟ ଭାଙ୍ଗି ପାରେ ?
" ଯେ ଗଢ଼ିଲା ମନସୁଖେ ଏ ବପୁ ଘଟନ ଗୋ
"ସେ କି ପୁଣି ପାରେ ଭାଙ୍ଗି ଏ ଶିଳ୍ପ-ଶୋଭନ ଗୋ
"ଏତେ ଅକାରଣ କ୍ରୋଧ ସମ୍ଭବ କେମନ ଗୋ ?"



( ୯୩ )

ଉତ୍ତର ତ ଏ କଥାର ନ ଦେଲେଟି କେହି ଗୋ
ଶେଷେ ଘଟେ ଏକ ତହୁଁ ଉଠି ଗୁଙ୍କ କହୁ ଗୋ
ଗଠନ ତା ଅସୁନ୍ଦର
ତେଣୁ ସେ ଦେଲା ଉତ୍ତର
"ମୋତେ ଦେଖି ସକଳେ ତ କରୁଥାନ୍ତି ଘୃଣା ଗୋ
"ମୋତେ ତ ଗଢ଼ିଚି ସେଇ ବଙ୍କାହାତ ପୁରୁଷ ଗୋ
"ଥରୁଥିଲା ହାତ କି ତା' ? ଏ କି ବିଡ଼ମ୍ବନା ଗୋ ?"

( ୯୪ )

ଶୁଣି ଶୁଣି ଭାବିଲି ମୁଁ, ଏ କି କଥାଭାଷା ଗୋ
ଜାଅନ୍ତା ମଣିଷ ପରି ଏମାନଙ୍କ ଆଶା ଗୋ
ଜୀବନେ ମରଣେ ସହି,
ଏକଇ ଭାବନା ଏହି
"କି ହେଲା ?" "କାହିଁକି ହେଲା ?" ଦୁଇଟି ବିଚାର ଗୋ
"କେମନ୍ତେ ଏମନ୍ତ ହେଲା ?" ଚିନ୍ତା ନାହିଁ କାର ଗୋ ?
ଘଟେ ଏକ ଉଠି ତହୁଁ କହିଲା ଚିତ୍କାରି ଗୋ
ତା ତାହାରେ ତତ୍ପରେ ଉଠେଇଁ ହୁଙ୍କାରି ଗୋ
"କହ, କହ, ସତ କରି
"କାହାର ଏ କାରିଗରି ?
"କିଏ ସେ କୁମ୍ଭାର ଏଥି; କିଏ ଅବା ଘଟ ଗୋ ?
"ପ୍ରଭେଦ ଏ ଦୁଇମଧ୍ୟେ କାହିଁରେ ପ୍ରକଟ ଗୋ ?"

( ୯୫ )

ଆଉ ଏକ ଘଣ୍ଟ ତହୁଁ ବହିଲା ଉତ୍ତର ଗୋ
"କହନ୍ତି ସକଳେ, ଧାତା ବଡ଼ ସେ ନିଠୁର ଗୋ

"ଆଖିରୁ ତା ଉଠେ ଜଳି
"ନିର କର ଟୁମାବଳୀ,

"ଦିନେ ସେ କାଟିବେ ପରା ସୃଷ୍ଟିର ବିଗ୍ରହ ଗୋ ?
"ଏ ସବୁ ସମସ୍ୟା ମୋତେ ଲାଗେ ଅସୁନ୍ଦର ଗୋ

"ମନେ ମନେ ଭାଳି ମୁଁ ତ ଜାଣିଚି ମୁକର ଗୋ
"ଏ ଭାଟି ଅମିତ୍ର ସର୍ବ ଶୁଭର ଆକର ଗୋ
"ଅମଙ୍ଗଳ ନ କରିବେ କେବେ ଟରଣୀର ଗୋ ।"



( ୪୭ )

ଆନ ଘଟ ତହୁଁ ଉଠେ କହି ବେଗ ଭରେ ଗୋ
" ଇଚ୍ଛା ଯାର ହୁଏ ସେ ଯେ ବୃଥା ଝୁରି ମରେ ଗୋ

"ଯେ ମାଟିରେ ମୋ ଶରୀର
"ଗଢ଼ା ଗୋ ହୋଇଛି ଚିର

"ଯୁଗ ଯୁଗ ଧରି ତାହା ଗଲଣି ତ ଶୁଖି ଗୋ
"ଅତୀତ କାଳର ଏ ମୋ କଳେବର ସାକ୍ଷୀ ଗୋ

" ଏବେ ତ ଏତିକି ମୋର
"ବାସନା ଗୋ ଜାଗେ ଚିର

"ଭର ମୋର କଳେବରେ ଦ୍ରାକ୍ଷାରସ ସରସ
"ବହୁଦନ୍କୁ ପରଶିତ ସେ ରସର ମୁହାଁସ;

"ସେତିକି ହେଲେ ତ ମୋର ଦୁଃଖ ଆଉ ନଥିବ
"ଧୀରେ ଧୀରେ ସବୁ ମୋର ସୁଧାତୃଷା ମେଣ୍ଟିବ ।"



( ୯୭ )

ଏମନ୍ତେ ତ ଚଳୁଥିଲା ତାଙ୍କ କଥା ଭାଷା ଗୋ
ଏକାଳେ ଚତୁର୍ଥୀ ଗୃହ ଭରିଲା ସହସା ଗୋ

ଝରକା ଭିତର ଦେଇ
ପଡ଼ିଲା ଲୁଟେଇ ଛାଇ

ଦେଖିଦେଲା ଘଠ ଏକ ସେ ଶିଶୁ ସୁନ୍ଦର ଗୋ
ହକଲେ ତ ହୁଁ ହୁଥିଲେ ସେ ଛବି ମଧୁର ଗୋ

ଉଠିଲା କାହାଲ କେଳି
ସବେଁ ହେଲେ କୋଳାକୋଳି

ସକଳେ ଉଠିଲେ କହି, "ଭାଇ, ଆରେ ଭାଇରେ;
"ଦେଖ, ଦେଖ, କୁମାରଟି ପଳାଉଛି ଧାଇଁରେ

"ବେଳେ ତାର ପଡ଼ିଲାଣି ଗଣ୍ଡି ନୁଆ ହୋଇରେ
"କେଉଁ କେଉଁ ଡାକିଲଣି; ଶବଦ ଶୁଭୁଇରେ ।"

× × ×



( ୪୮ )

ଶୁଣ ସହି, କହେ ତୋରେ; ରଖିଥିବୁ ମନେ ଗୋ
ଲୋଡ଼ା ମୋର ଦ୍ରାକ୍ଷାରସ ପ୍ରାଣ ଅବସାନେ ଗୋ
ଏ ମୋର ଶରୀରୁ, ସହି,
ପ୍ରାଣବାୟୁ ଗଲେ ବହି,
ଧୋଇବୁ ଏ ବପୁ ମୋର ଦ୍ରାକ୍ଷାରସ ଦେଇ ଗୋ
ଦ୍ରାକ୍ଷାର ପଲ୍ଲବ ଶେଯେ ରଖିବୁ ଶୁଆଇ ଗୋ
ଫୁଲର ବଗିଚ୍ଚ ପ୍ରାନ୍ତେ ରଖି ଦେବୁ ନେଇ ଗୋ
ସୁନ୍ଦରୀ ଚରଣରେଣୁ ପଡୁଥିବ ଯହିଁ ଗୋ ।

( ୪୯ )

ଗ୍ରୀଷ୍ମ ତପନ ରେଖା ବିତାଇଦ୍ୟା ଅଂଶେ ଗୋ
ପରିଚିତ ବନ୍ଧୁଗଣ ଯହିଁ ଢବା ଶେଷେ ଗୋ
ପିଇବେ ସେବ ସମୀରଣ
କରି ଶୁଭ ସମ୍ଭାଷଣ
ବସିବେ ସେ ସହକାର ତଳେ ଦଳେ ଦଳେ ଗୋ!
ସେ ବୃକ୍ଷର ଶାଖା ଯହିଁ ସମୀରଣେ ଦୋଳେ ଗୋ
ପାଟିର ସଉଧ ପାଶ ପାଚୀରିର ମୂଳେ ଗୋ
ସେହି ସହକାର ଶାଖା ଦେହୁଁ ଝରି ଝରି ଗୋ
ଚୂତ ମୁକୁଳରେ ତନୁ ଯିବ ମୋର ଭରି ଗୋ
ପାଦଠାରୁ ଶିର ଯାଏ ଉଠିବ ଶିହରି ଗୋ ।

(୧୦୦)

ତେବେ ସିନା ସହି, ମୋର ଏ ଦେହ ପାଉଁଶ ଗୋ
ଚଉଦିଗେ ଛୁଟାଇବ ଅପୂର୍ବ ସୁବାସ ଗୋ
ଦ୍ରାକ୍ଷାରସ ସଞ୍ଚରଭି
ମହକାଇ ଦେବ ନଭି
ଅଜଣା ବାଟୋଇ ପ୍ରାଣେ ଅଣିବ ପ୍ରେରଣା ଗୋ
ସତ୍ୟର ସନ୍ଧାନ ଯେବେ ଥିବ ତାର ଜଣା ଗୋ
ଅନ୍ଧାରରେ ଏକା ରହି ଦେଖିବ ବାଟେବଣା ଗୋ ।

(୧୦୧)

ସତେ, ସହି, ଭୋଗର ଯେ ମୋହିନୀ ମୂରତି ଗୋ
ଯାହୁ ମନ ଦେଇ ପୂଜୁଥିଲି ନିତି ନିତି ଗୋ
ଲୋକ ଲୋଚନରେ, ସହି,
ନିନ୍ଦା ମୋ ରଟିଲା ତହିଁ,
ଜଗତର ଘୃଣା ଯେତେ ସବୁ ହେଲା ସାର ଗୋ
ଗୋଷ୍ପଦ ସଲିଳେ ବୁଡ଼ିଗଲା ଯଶ ମୋର ଗୋ
ଛିଡ଼ିଲା ସକଳ ଖ୍ୟାତି ମାଳା ପରକାର ଗୋ ।



( ୧୦୬ )

ସତେ, ସତେ, ସତ୍ୟ, କେତେ କେତେଥର କେଜାଣି
ଅନୁତାପ ସ୍ରୋତେ ହୃଦ ଉଠେ ମୋ ଜାଗି

ଶପଥ କରଇ ମୁହିଁ
କେତେଥର ହେତୁ ନାହିଁ

ନ ଛୁଇଁବି ବୋଲି ଆଉ ଦ୍ରାକ୍ଷାରସ ଛଳେ ଗୋ,
ତେବା କି ଆଏ ସଜନି, ସେ ଶପଥ ବେଳେ ଗୋ ?
ଯେତେକେ ସେ ଶପଥ, ସବୁ ମତୁଆଲା ଭୋଳେ ଗୋ ।

ଯେତେ ଯେତେବେଳେ କିନ୍ତୁ ଅନୁତାପ ଲାଗେ ଗୋ
କାହୁଁ ସେ ବସନ୍ତ ଅସି ଜନ୍ମହୁଏ ଆଗେ ଗୋ

ଗୋଲାପର ସଜଫୁଟା
ଫୁଲେ ଭରି ଉଠେ ତୋଟା,

ଅନୁତାପ ସୂତା ମୋର ଛିଣ୍ଡିଯାଏ ଦୂରେ ଗୋ
ପୁଣି ସେ ବସନ୍ତ, ଦ୍ରାକ୍ଷାରସ ପାତ୍ରେ ପୂରେ ଗୋ ।



(୧୦୩)

ସେ ଯେଉଁ ମଦିର ସହି,.! ଉନ୍ମାଦନା ଭରି ଗୋ
କାଳେ କାଳେ ମୋରେ ସେତ କରେ ଅତ୍ୟାଚାର ଗୋ

ପରମ ଶତ୍ରୁ ସେ ମୋର
ମୋ ଯଶ କୀର୍ତ୍ତିର ଚୋର

ସକଳ ସମ୍ମାନ ମୋର ନେଇଛି ସେ କାଢ଼ି ଗୋ
ମୋ ଯଶ ବୃକ୍ଷର ସେତ ନିରନ୍ତ କୁରାଢ଼ୀ ଗୋ
ତଥାପି ସଜନି, ତୋତେ କହିରଖେ କିନା ଗୋ
ସୁରା ଯେ ବିକନ୍ତି ସବୁ ମୂର୍ଖ ଲୋକ ସିନା ଗୋ;

ମାତ୍ର କଥା ଏକ ସତ
ବରୁବ ବୁଝ ଗୋ ମିତ,

ମୂର୍ଖଟି ସେମାନେ ନ ବନ୍ଧନ୍ତି ମଦ୍ୟମଣିକୁ
ଆଖି ପାଉଥାନ୍ତି ଖାଲି ମୋର ଟଙ୍କା ମୁଣିକୁ
ମାତ୍ର ସିନ୍ଧୁ ଯେତେ ଟଙ୍କା ଦେଇ ତାଙ୍କୁ ଗଣି ଗୋ
କିବା ମୂଲ୍ୟ ତାର ସହି ? ଭୁଲୁଛି ମୁଁ ତା ଗଣି ଗୋ
ମୋତେ ସେ ବିକନ୍ତି ଯେଉଁ ଦ୍ରାକ୍ଷାରସ ପାଣିଟି
ଅମୂଲ୍ୟ ସେ; ଅମୃତ ସେ, କଉଡ଼ିକ କାଣିଟି ।



( ୧୦୪ )

କିନ୍ତୁ ଅହ୍ନା ! ଏକା ସହି ବେଦନାର ବାଣୀ ଗୋ ?
ଯାଇବ ଗୋଲାପ ତେଜି ଏ ଧରଣୀ ରାଣୀ ଗୋ,
ତା ସଙ୍ଗେ ହୋଇବ ଦୂର
ବସନ୍ତର ଶୋଭା ସାର
ଯୌବନର ଉନ୍ମାଦନା ଯାଇବତ ବିତି ଗୋ
ତରୁ ଡାଳେ ବସି ଯିଏ ଗାଉଥିଲା ଗୀତି ଗୋ
କାହିଁ ସେ ଆସିଲା ପୁଣି କେଉଁଣେ ଗଲା ଉଡି ଗୋ
କେ ଜାଣେ କାହିଁକି ପ୍ରିୟା ? ଏ କି ଅନୁଭୂତି ଗୋ ?

( ୧୦୫ )

ମରୁର ଏ ଝରଣାରୁ ଦଗ୍ଧଜନ୍ତା କି ଦାନେ ଗୋ
ଗୋଟିଏ ଝଲକ ! ଶିର ରହୁଯାନ୍ତା ମନେ ଗୋ
ଗୋଟିଏ ପଲକ ସହି,
ଅନ୍ତରେ ଯାଆନ୍ତା ରହି;
ଅଜଣା ଏ ପଥସ୍ୱରୀ ବାଟୋଇର ଦଳ ଗୋ
କେଉଁ ରାଜ୍ୟ ଯିବେ ତାଙ୍କ ସରିଗଲେ ବେଳ ଗୋ ?
କିମ୍ବା ଶେଷ ହେବ ଯେବେ ସଜ୍ଜିତ ଖେଳ ଗୋ ?
ଧରଣୀର ଶ୍ୟାମଳିମ ପଦଦଳା ସହି ଗୋ
ପୁଣି ଯେବେ ଝରଜଳେ ଉଜଳି ଉଠଇ ଗୋ



( ୧୦୭ )

ଅସ୍ତା ସନ୍ଧି, ଏ ଧରଣୀ ଆଉଥରେ କିନା ଗୋ
ଟଣ୍ଡା ଯେବେ ହୁଅନ୍ତାଟି ନୂତନ ଯାତନା ଗୋ

ଭାଗ୍ୟର ସେ ଇତିହାସ
ସମାପ୍ତ ନୋହୁ ଅବଶ୍ୟ

ଝରି ତାରେ, ରଶ୍ମି ତହିଁ ଲେଖୀକର ସ୍ମୃତି ଗୋ
କହନ୍ତି "ମେ ନାମ କର ସୁନାରେ ଅଙ୍କିତ" ଗୋ
ସୁବର୍ଣ୍ଣ ପୃଷ୍ଠାରେ ନିଟର୍ଣ୍ଣ ଲେଖନ୍ତା ଯେ, ମିତ ଗୋ

ଯେବେ ସେ ଅମଙ୍ଗ ତହିଁ ହୁଅନ୍ତାଟି ଉଲା ଗୋ
କହନ୍ତି "ଲିଭାଇ ଦିଅ ଅମ ନାମାବଳୀ" ଗୋ ।



( ୧୦୭ )

ସତେତ ସତ୍ୟ, ବସୁଛି ଏ ବିଶ୍ୱ ଇତିହାସ ଗୋ
ଏଥି ଲୁଚିଗଲେ ମୋର ନାମ, ଯିବ କିସ ଗୋ ?

ମୋ ପରି ଅଭାଗୀ ପୁଣି
ଚିର ନିରାଶ୍ରୟ ପ୍ରାଣୀ

ନାମ ଭାରି ଏ ବିଶ୍ୱଟି ଚୋଥିର ପତ୍ରରୁ ଗୋ
ଲୁଚିଗଲେ ଭଲ ସିନା, ତୁ କି ନ ବିଚାରୁ ଗୋ ?

ଛପିଗଲେ ନାମ ସିନା ଭଲ କାଳକାଳକୁ
ନୋହିଲେ ଅନନ୍ତ ଯୁଗ ଧରି କାଳବେଳକୁ

ହୃଦର ରକତଧାର
ଝରି ଝରି ଶାଳି ଚିର

ବେଦନାର ଆର୍ତ୍ତନାଦ ବଢ଼ାଇବ ସିନା ଗୋ
ଯୁଗେ ଯୁଗେ ନ ତୁଟିବ ସେ ଗୁରୁ ବେଦନା ଗୋ ।



( ୧୦୮ )

ଅହ୍ମା ପ୍ରିୟେ ତୋର ମୋର କରଣି ବିଧୁର ଗୋ
ଏ ଜଗତେ କଳପନା ଚିର ବିଷାଦର ଗୋ
ନ ପାରିବା କି ଲୁଣ୍ଠାଇ ?
ପାଦେ ତାକୁ ଦଳି ଦେଇ
ଠିକି ଠିକି କରି ତାକୁ ପକାଇବା ଚିରି ଗୋ
ପୁଣି ଥରେ ଗଢ଼ି ସବୁ ଦେବା ନୂଆ କରି ଗୋ
ହୃଦର ଆକାଂକ୍ଷା ଲୁଝେଁ ଗଢ଼ିବା ଭିଆରି ଗୋ

( ୧୦୯ )

ପୁଣି ଦେଖ ସଜନି ଗୋ ! ଚନ୍ଦ୍ର ଉଠେ ଆକାଶେ
ଥରି ଥରି ଚାହେଁ ସନ୍ଧି ତୋରେ ମୋରେ ପରି ସେ !
ଆଜ ଦୁଇ ଦିନ ପରେ
ପୁଣି ଉଠି ଆକାଶରେ
ଚାହିଁ ଚାହିଁ ନ ପାଇବ ଜଣେ ଆମ ଭିତରୁ
ଚେପେତ ଝଙ୍କି ମାରି ପଡ଼େଛି ଚାହୁଁ ଗଛପତରୁ ।



( ୧୧୦ )

ଶୁଣ ସଖି, ମନେ ରଖ, ଗଲେ ମୁହିଁ ଭୁଲି ଗୋ
ଭୁଲେଣି ଏ ପାଦେ ଯେବେ ଆସିବୁ ତୁ ବୁଲି ଗୋ

ଏ ଘାସ ଘଡର ପରେ
ଭାସ୍ୱର ସୁଷମା ସ୍ନାତେ

ଫୁଟିଥିବେ ଯେବେ ଜାଇ, ଜୁଇ, ଚମ୍ପା, ମଲ୍ଲିକା
ଆସି ଯେବେ ପହଞ୍ଚିବୁ ପଥ ଭୁଲି ଭୁଲିକା

ଅନନ୍ତ ଆନନ୍ଦ ସ୍ରୋତେ ଭାସୁ ଯେବେ ସଖି ଗୋ
ପହଞ୍ଚିବୁ ମରଣର ଶେଯ ମୋର ଯହିଁ ଗୋ
ମୋର ସ୍ମୃତି ଚେତ ସଖି, ଏତେ ମାତ୍ର କରିବୁ
ଟିକିସେକ ଲୁହ ମୋର ଦେହପରେ ଢାଳିବୁ ।

**ସମାପ୍ତ**



# ଦି ଉତ୍କଳ ଷ୍ଟୋରସର ଅନ୍ୟାନ୍ୟ

## ପୁସ୍ତକମାନ

### ଉପନ୍ୟାସ

| | | |
|---|---|---|
| ୧—ମଞ୍ଜୁରୀ ପକ୍ଷୀ— | ରାଜକିଶୋର ପଟ୍ଟନାୟକ | [illegible] ୧ |
| ୨—ଅଚଳା | ଶ୍ରୀନିବାସ ମିଶ୍ର | [illegible] ୩ ୧ |
| ୩—ଟଳନ୍ତି ନୁହେଁ | „ | ଟ ୧ ୧ |
| ୪—ମନର ଦାଗ | ଶ୍ରୀ କମଳାକାନ୍ତ ଦାସ | ଟ ୧ । |
| ୫—ସାତଦୀପ | ଶ୍ରୀ ପ୍ରାଣକୃଷ୍ଣ ସାମଲ | ଟ ୦ ୪ |
| ୬—ମା | ଶ୍ରୀ ଜଗବନ୍ଧୁ ମହାପାତ୍ର | ଟ ୦ ।/ |
| ୭—ସପନ କୁହୁଡ଼ି— | ଶ୍ରୀ ରାଜକିଶୋର ପଟ୍ଟନାୟକ | ଟ ୧ ୧ |

### ନାଟକ

| | | |
|---|---|---|
| ୮—ଦ[illegible] | କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ | ଟ ୧ । |
| ୯—ମ[illegible]ଭାତ | ଶ୍ରୀ କବି ପ୍ରହ୍ଲାଦ ମହାପାତ୍ର | ଟ ୧ । |

### ଯନ୍ତ୍ରସ୍ଥ

| | |
|---|---|
| ସୁବାସ ବୋଷ | ଶ୍ରୀ ଅଶୋକ ଦାଶ |
| ବ୍ରିଟିଶ ଶାସନ ଜନଜୀବନ | ଶ୍ରୀ ହର୍ଷ ମିଶ୍ର |

---

କଟକ, ଶ୍ରୀ ହରିନାଥ ପ୍ରେସରେ ମୁଦ୍ରିତ